# ଭକ୍ତ କବି ରାମଦାସ

(ସୃଷ୍ଟି ଓ ସମୀକ୍ଷା)



ଶ୍ରୀ ଲକ୍ଷ୍ମୀମୋହନ ତ୍ରିପାଠୀ

# ଭକ୍ତ କବି ରାମଦାସ

## (ସୃଷ୍ଟି ଓ ସମୀକ୍ଷା)

ଶ୍ରୀ ମହୀମୋହନ ତ୍ରିପାଠୀ
ଏମ୍. ଏ., ଓ. ଏ. ଏସ୍.

ପ୍ରକାଶକ— ଶ୍ରୀ ବାଳାନନ୍ଦ ପାଏଁ
ଗ୍ରାମ—ଡ଼ୁରା
ପୋ—ବାହାଦୁରପେଠା
ଜି—ଗଞ୍ଜାମ

ମୁଦ୍ରାକର—ଶ୍ରୀ ରାମଚନ୍ଦ୍ର ସାବତ୍

ମୁଦ୍ରଣ—ସତ୍ୟମାର୍ଗ ମୁଦ୍ରଣାଳୟ, ଗିରିମାର୍କେଟ, ବ୍ରହ୍ମପୁର-୨

ପ୍ରଥମ ସଂସ୍କରଣ—୧୯୮୦



( ଏହି ବହିର ବିକ୍ରିରୁ ଲବ୍ଧ ଅର୍ଥ ଭକ୍ତକବି ରାମଦାସଙ୍କ ସ୍ମୃତି ଉଦ୍ଦେଶ୍ୟରେ ବିନିଯୋଗ କରାଯିବ )

ମୂଲ୍ୟ—ଟ ୨-୦୦

Place—Parlakhemundi
Date—12-9-80

Dr. S. N. Rajguru, D. Lit.
Retd. Epigraphist, Orissa.
At. Chitrakar Street,
P.O. Parlakhemundi
Dt. Ganjam, PIN Code 761200

## —ଶୁଭେଚ୍ଛା—

ପ୍ରାଚୀନ ମନ୍ଦର ରାଜ୍ୟ ଅନ୍ତର୍ଗତ ଡ଼ୁରା ଗୋଟିଏ ପ୍ରସିଦ୍ଧ ଗ୍ରାମ । ଏହା ବର୍ତ୍ତମାନ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭଞ୍ଜବିହାର ଠାରୁ ଅଳ୍ପ ଦୂରରେ ଅବସ୍ଥିତ । ସେହି ଡ଼ୁରା ଗ୍ରାମରେ ଭକ୍ତକବି [illegible]ଦାସ ଖ୍ରୀ: ୧୮ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଲଛମନଦାସଙ୍କ ଔରସରେ ଜନ୍ମ ଗ୍ରହଣ କରିଥିଲେ । ସେତେବେଳେ ଓଡ଼ିଆ ଭାଷାରେ ବହୁ ପୁରାଣ ଓ ଧର୍ମଗ୍ରନ୍ଥମାନ ଲେଖା ହେଉଥିଲା । ଜଗନ୍ନାଥଙ୍କ ଓଡ଼ିଆ 'ଭାଗବତ' ଘରେ ଘରେ ପାରାୟଣ ହେଉଥିଲା । ବୈଷ୍ଣବ କବି ଓ ଧର୍ମ ପ୍ରାଣ ବ୍ୟକ୍ତି ବହୁ ସଂଖ୍ୟାରେ ଓଡ଼ିଶାର ସ୍ଥାନେ ସ୍ଥାନେ ଅବସ୍ଥାନ କରି ଧର୍ମଚର୍ଚ୍ଚାରେ କାଳ କାଟିଥିଲେ । ଖୁର୍ଦ୍ଧା ରାଜା ବୀରକେଶରୀ ଦେବଙ୍କ ୪୨ ଅଙ୍କ,

ତୂଳ ୨୫ ଦିନ ରବିବାର । ସେଦିନ କବି ରାମଦାସ ତାଙ୍କର ପ୍ରସିଦ୍ଧ 'ଦାର୍ଢ୍ୟତା ଭକ୍ତି ରସାମୃତ' ନାମକ ଭକ୍ତମାଳା ଗ୍ରନ୍ଥ ରଚନା ସମ୍ପୂର୍ଣ୍ଣ କରିଥିଲେ । ଅଙ୍କ ଗଣନାନୁସାରେ ତାହା ନଭେମ୍ବର ୧୭୬୮ ଖ୍ରୀଷ୍ଟାବ୍ଦ ସଙ୍ଗେ ସମାନ । କବି ରାମଦାସଙ୍କ ମନ୍ତ୍ରଗୁରୁ ଥିଲେ ଗଦାଧର ଦାସ । କବି ତାଙ୍କୁ ବନ୍ଦନା କରି ଜଗନ୍ନାଥ ଦାସଙ୍କ ନବାକ୍ଷରୀ ଛନ୍ଦରେ ଯେଉଁ ମଧୁର ଓ ସରଳ ଭାଷା ପ୍ରୟୋଗ କରି 'ଦାର୍ଢ୍ୟତାଭକ୍ତି' ଗ୍ରନ୍ଥଟି ରଚନା କଲେ ତାହା ଉତ୍କଳ ସାହିତ୍ୟକୁ ଏକ ଅତୁଳନୀୟ ଅବଦାନ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ହିନ୍ଦୀ ସାହିତ୍ୟରେ ପଣ୍ଡିତ ନାଭାଜୀ 'ଭକ୍ତମାଳା' ନାମକ ଗ୍ରନ୍ଥ ରଚନା କରି ଯେପରି ଅମର ହୋଇଅଛନ୍ତି । ସେପରି କବି ରାମଦାସ ମଧ୍ୟ ଓଡ଼ିଶାରେ ଅମର କୀର୍ତ୍ତି ଲଭି କରି ଅଛନ୍ତି । ତାଙ୍କର 'ଦାର୍ଢ୍ୟତା ଭକ୍ତି ରସାମୃତ' ଦୁଇ ଭାଗରେ ବିଭକ୍ତ ହୋଇଛି । ଦ୍ୱିତୀୟ ଭାଗଟି ଖ୍ରୀ: ୧୮୦୦ ରେ ପୂର୍ଣ୍ଣ ହୋଇଥିଲା । କାରଣ, ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ରାଜତ୍ୱର ୩ ଅଙ୍କରେ ତାହା ପୂର୍ଣ୍ଣ ହୋଇଥିବାର ସେ ଲେଖିଅଛନ୍ତି । ଏ ଗ୍ରନ୍ଥରେ ବହୁ ଭକ୍ତ ଓ ବୈଷ୍ଣବ କବିଙ୍କର ଜୀବନ ଚରିତ ସଙ୍ଗେ ମାହାତ୍ମ୍ୟ ଉଲ୍ଲେଖ ହୋଇଥିବାରୁ, ଓଡ଼ିଶା ଇତିହାସରେ ଏବଂ ଓଡ଼ିଆ ସାହିତ୍ୟର ଇତିହାସରେ ଏହା ଗୋଟିଏ ଉତ୍କୃଷ୍ଟ ଗ୍ରନ୍ଥରୂପେ ପରିଗୃହୀତ ହୁଏ ।

ଦୁଃଖର ବିଷୟ, ଓଡ଼ିଶାର ବହୁ କବି ଓ ମହାତ୍ମା ଆଜ ମଧ୍ୟ ଯଥାଯଥ ଭାବେ ଲୋକ ଲୋଚନକୁ ଆସି ପାରି ନାହାନ୍ତି । ତ୍ରଢପ୍ତେ ଶ୍ରୀ ମନ୍ମୋହନ ତ୍ରିପାଠୀଙ୍କ ଉଦ୍ୟମ ଫଳରେ ଏବେ ଓଡ଼ିଶାର ଅଷ୍ଟାଦଶ ଶତାବ୍ଦୀର ସେହି ସୁପ୍ରସିଦ୍ଧ ଭକ୍ତ କବି ରାମଦାସଙ୍କ ସମ୍ବନ୍ଧରେ ଗୋଟିଏ ପୂର୍ଣ୍ଣାଙ୍ଗ ଆଲୋଚନା ପ୍ରକାଶ ହେଉଥିବା ସମ୍ବାଦ ପାଇ ମୁଁ ତାଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।

ବଶମ୍ବଦ

ଶ୍ରୀ ସତ୍ୟନାରାୟଣ ରାଜଗୁରୁ

# କୃତଜ୍ଞତା ଜ୍ଞାପନ

## ଶ୍ରୀ ରବିନାରାୟଣ ସେନାପତି ଆଇ. ଏ. ଏସ୍.

ଗତ ଜୁଲାଇ ମାସରେ ଶ୍ରୀ ଯୁକ୍ତ ସେନାପତି ବ୍ରହ୍ମପୁରରେ ଏସ୍. ଡ଼ି. ଓ. ଥିବା ସମୟରେ ଦିନେ କଥା ପ୍ରସଙ୍ଗରେ ମତେ କହିଥିଲେ—'ଦାର୍ଢ଼୍ୟତା ଭକ୍ତି'ର ରଚୟିତା ରାମଦାସ ସମ୍ପର୍କରେ ଆପଣ ଲେଖାଲେଖି କରନ୍ତୁ । ବାସ୍ତବିକ ତାଙ୍କର ସେଇ ସୂଚନାହିଁ ମତେ ଏ ଗ୍ରନ୍ଥ ରଚନା କରିବା ପାଇଁ ପ୍ରେରଣା ଯୋଗାଇଥିଲା । ଏହି ବହି ସମ୍ପର୍କରେ ସେ କେତେକ ମୂଲ୍ୟବାନ ପରାମର୍ଶ ମତେ ଦେଇଥିଲେ ।

## ଡକ୍ଟର ସତ୍ୟନାରାୟଣ ରାଜଗୁରୁ :

ଓଡ଼ିଶା ତଥା ଭାରତ ବିଖ୍ୟାତ ପଣ୍ଡିତ ଐତିହାସିକ ଡ଼: ରାଜଗୁରୁ ମୁଁ ରାମଦାସଙ୍କ ସମ୍ପର୍କରେ ବହି ଲେଖୁଛି ଜାଣି ଖୁସି ହୋଇ ମୋ ନିକଟକୁ ଏକ ଶୁଭେଚ୍ଛାବାର୍ତ୍ତା ପଠାଇ ମତେ ଗୌରବାନ୍ୱିତ କରିଛନ୍ତି । ତାଙ୍କର ଏହି ଶୁଭେଚ୍ଛାବାର୍ତ୍ତା ଚିଠିଟି ମୋ ପାଖରେ ଏକ ଅମୂଲ୍ୟ ସମ୍ପଦ ହୋଇ ରହିବ ।

## ଶ୍ରୀ ରାଜେନ୍ଦ୍ର ପ୍ରସାଦ ପାଣ୍ଡ :

ଡ଼ୁମ୍ବ ଗ୍ରାମନିବାସୀ ଜଣେ ଉତ୍ସାହୀ ଯୁବକ । ଶ୍ରଦ୍ଧେୟ ଶ୍ରୀ ପାଣ୍ଡ, ମୁଁ ରାମଦାସଙ୍କ ସମ୍ପର୍କରେ ଆଗ୍ରହୀ ଜାଣି ଆପେ ଆପେ ମତେ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସେ ମତେ 'ଦାର୍ଢ଼୍ୟତା ଭକ୍ତି'ର କେତେକ ତାଳପତ୍ର ପୋଥି, ହିନ୍ଦି 'ଭକ୍ତମାଳା' ଇତ୍ୟାଦି କେତେକ

ପୁସ୍ତକ ଓ ତଥ୍ୟ ଯୋଗାଇ ଥିଲେ । ମତେ ସାଥିରେ ନେଇ ଡ଼ୁଗ୍ରୀ ଗ୍ରାମରେ ଥିବା କବିଙ୍କ ସାଧନାପୀଠ, ମଠ ଓ ବାସସ୍ଥାନ ବୁଲାଇ ଦେଖାଇଥିଲେ । କେବଳ ସେତିକ ନୁହେଁ—ଏ ବହି ଛପାଇବାର ବ୍ୟବସ୍ଥା ସେ ହିଁ କରିଛନ୍ତି । ସେ ଉଦ୍ୟମ କରିନଥିଲେ ହୁଏତ ଏ ବହି ଅନେକ କାଳଯାଏଁ ଛପା ନହୋଇ ପଡ଼ି ରହିଥାନ୍ତା ।

ଏହି ଅବସରରେ ମୁଁ ଶ୍ରୀଯୁକ୍ତ ସେନାପତି, ଡଃ ରାଜଗୁରୁ ଓ ପାଣିଙ୍କୁ ମୋର ହୃଦପୂର୍ଣ୍ଣ କୃତଜ୍ଞତା ଜ୍ଞାପନ କରୁଛି ।

ବ୍ରହ୍ମପୁର
ତା ୨-୧୦-୮୦
(ଗାନ୍ଧୀ ଜୟନ୍ତୀ)

—**ଲେଖକ**

## 'ଦାର୍ଢ୍ୟତାଭକ୍ତି ରସାମୃତ' ରଚୟିତା

### ଭକ୍ତ କବି ରାମ ଦାସ



ଆଷାଢ଼ ଶୁକ୍ଳ ଦଶବାସେ । ଶ୍ରୀ ମୁକ୍ତେଶ୍ୱରଙ୍କର ପାଶେ ॥
ସଦା ସମ୍ପୂର୍ଣ୍ଣ ଜପ୍ୟକର । ରାମଚନ୍ଦ୍ରଇ ରାମଦର ॥
ମଦୁଙ୍ଗ ରାଜ୍ୟ ଡ଼ୁରାଗ୍ରାମ । ସେ ଗ୍ରାମେ ଅଟେମୋ ବିଶ୍ରାମ ॥
କହଇ ବିପ୍ର ରାମ ଦାସ । [illegible] ॥

# ଭକ୍ତକବି ରାମଦାସ କିଏ ?

ଭକ୍ତକବି ରାମଦାସ କିଏ ? ଏହି ପ୍ରଶ୍ନ ପଚାରିଲେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଅର୍ଘ୍ୟପୂଜା କରିଥିବା କେତେ ଜଣଙ୍କୁ ଛାଡ଼ି ଦେଲେ ଅନ୍ୟମାନେ ହୁଏତ ହଠାତ୍ କହି ପାରିବେ ନାହିଁ, କିନ୍ତୁ, 'ଦାର୍ଢ୍ୟତାଭକ୍ତି ରସାମୃତ' ନାମକ ଓଡ଼ିଆ ପୁରାଣପୋଥିର ନାମ ଅଧିକାଂଶ ଓଡ଼ିଆଲୋକ ଜାଣିଥିବେ ଓ ଅନେକ ମଧ୍ୟ ପଢ଼ିଥିବେ । ଜଗନ୍ନାଥ ଦାସଙ୍କ ଭାଗବତ ପରି ଏହି ପୁରାଣ ଓଡ଼ିଶାର ସହର ଓ ପଲ୍ଲୀରେ ବ୍ୟାପକ ଭାବେ ପ୍ରଚଳିତ ତଥା ଆଦୃତ । ଏହି ସୁଖ୍ୟାତ ବହିର ଲେଖକ ହେଉଛନ୍ତି—ଭକ୍ତକବି ରାମଦାସ ।

## —କବିଙ୍କ ଜନ୍ମସ୍ଥାନ—

ଏହି ଲେଖକ ବ୍ରହ୍ମପୁର ସହରର ଅତି ନିକଟରେ ଥିବା 'ଓଡୁରି' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଦାର୍ଢ୍ୟତାଭକ୍ତି ରସାମୃତର ପଞ୍ଚମ ଅଧ୍ୟାୟରେ କବି ରାମଦାସ ନିଜର ପରିଚୟ ଏହିପରି ଦେଇଛନ୍ତି :—

"ମହୁରି ରାଜ୍ୟ ଓଡୁରି ଗ୍ରାମ । ସେହି ଗ୍ରାମେ ଅଟେ ମୋ ବିଶ୍ରାମ ॥
ଶ୍ରୀ ଗୁରୁ ଗଦାଧର ଦାସ । ସେ ପାଦ ପଙ୍କଜେ ମୋର ଆଶ ॥
ପିତା ମୋ ଲକ୍ଷ୍ମନ ଦାସ । ମୁହିଁ ଅଟଇ ତାଙ୍କ ଶିଷ୍ୟ ॥

ପ୍ରାଚୀନ ମହୁରୀ ରାଜ୍ୟ ( ବ୍ରହ୍ମପୁର ସହର ଉକ୍ତ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ) ର ପୁଣ୍ୟ ମୁକ୍ତେଶ୍ୱର ପୀଠ, ଓଡୁର ଗ୍ରାମରେ କବି ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଲକ୍ଷ୍ମନ

ଦାସ । ମାତାଙ୍କ ନାମ ଜଣାଯାଏ ନାହିଁ । କବି ଥିଲେ ଜାତିରେ ବ୍ରାହ୍ମଣ—ବଳରାମ ଗୋସ୍ୱାମୀ ।

ଆଜକାଲି ବଜାରରେ ମିଳୁଥିବା ଛପା 'ଦାର୍ଢ୍ୟତା ଭକ୍ତି ରସାମୃତ' ବହିରେ ଡ଼ୁବ୍ରି ଗ୍ରାମର ଉଲ୍ଲେଖ ନାହିଁ । ଉଦାହରଣ ସ୍ୱରୂପ କଟକର ଧର୍ମଗ୍ରନ୍ଥ ଷ୍ଟୋର ( ଅଲିଶା ବଜାର ) ଅରୁଣୋଦୟ ପ୍ରେସ୍ ଓ ଓଡ଼ିଶା କୋହିନୂର ପ୍ରେସ୍ କର୍ତ୍ତୃକ ପ୍ରକାଶିତ ଦାର୍ଢ୍ୟତା ଭକ୍ତି ରସାମୃତ ବହିର ୫୦ ଅଧ୍ୟାୟରେ "ମହୁରୀ ରାଜ୍ୟ ଡ଼ୁବ୍ରିଗ୍ରାମ" ସ୍ଥଳେ "ମହୁରୀ ରାଜ୍ୟେ ମୋର ଗ୍ରାମ" ଛପା ଯାଇଛି ଏବଂ "ସେ ଗ୍ରାମେ ମୋହର ବିଶ୍ରାମ" ବଦଳରେ "ସେ ଗ୍ରାମେ ମୋହର ଆଶ୍ରମ" ଛପା ଯାଇଛି । କିନ୍ତୁ ମହୁରୀ ରାଜ୍ୟର ନାମ ସବୁ ବହିରେ ଛପାଅଛି ।

ବଜାରରେ ମିଳୁଥିବା ଉକ୍ତ ଛପାବହି ମାନ ପଢ଼ି କେତେକ ସନ୍ଦେହ କରି ପାରନ୍ତି ଯେ ରାମଦାସ ହୁଏତ ମହୁରୀ ରାଜ୍ୟରେ ଜନ୍ମ ଗ୍ରହଣ କରିଥିବେ, କିନ୍ତୁ ଡ଼ୁବ୍ରି ଗ୍ରାମରେ ଜନ୍ମ ହୋଇଥିବେ ବୋଲି ପ୍ରମାଣ କଣ ?

ମାତ୍ର କବି ଯେ ଡ଼ୁବ୍ରି ଗ୍ରାମରେ ଜନ୍ମ ହୋଇଥିଲେ ଏହା ସୁପ୍ରମାଣିତ । ଏଥିରେ ସନ୍ଦେହ ନାହିଁ । ମହୁରୀ ରାଜ୍ୟରେ ଏହି ଡ଼ୁବ୍ରି ବ୍ୟତୀତ ଅନ୍ୟ କୌଣସି ଗ୍ରାମ ନାହିଁ । ଏହି ଡ଼ୁବ୍ରି ଗ୍ରାମରେ ମୁକ୍ତେଶ୍ୱର ଦେବାଳୟ ଓ ମଠ ଏବଂ କବିଙ୍କ ସମ୍ପର୍କୀୟ ଅନ୍ୟାନ୍ୟ ସ୍ମୃତିପୀଠ ମାନ ଏବେ ବି ବିଦ୍ୟମାନ । କବିଙ୍କ ବଂଶଧର ମାନେ ଏହି ଗ୍ରାମରେ ବର୍ତ୍ତମାନ ଅଛନ୍ତି । ଏହାଛଡ଼ା ନିମ୍ନଲିଖିତ ପ୍ରାମାଣିକ ତଥ୍ୟାବଳୀରୁ ରାମଦାସ ଯେ ଡ଼ୁବ୍ରି ଗ୍ରାମରେ ଜନ୍ମଲାଭ କରିଥିଲେ ତାହା ସ୍ପଷ୍ଟ ଜଣାଯିବ ।

(୧) ଡ଼ୁଗ୍ରି ଗ୍ରାମ ନିବାସୀ ଲେଖନକାର ସ୍ୱର୍ଗତ ହରିହର ପାଢ଼ୀଙ୍କ ଦ୍ୱାରା ନକଲକୃତ ଏକ ତାଳ ପତ୍ରର 'ଦାର୍ଢ଼୍ୟତା ଭକ୍ତି ରସାମୃତ' ପୋଥିରେ "ମହୁରୀ ରାଜ୍ୟ ଡ଼ୁଗ୍ରିଗ୍ରାମ । ସେ ଗ୍ରାମେ ଅଟେ ମୋ ବିଶ୍ରାମ" ବୋଲି ଲେଖାଅଛି । ସ୍ୱର୍ଗତ ପାଢ଼ୀ ଏହି ପୋଥି ଖ୍ରୀ:୧୮୯୧ ସାଲ ଜୁଲାଇ ୨୧ରେ ନକଲ ସମାପ୍ତ କରିଥିବା କଥା ଉଲ୍ଲେଖ କରିଛନ୍ତି । ଉକ୍ତ ତାଳପତ୍ର ପୋଥି ମୁଁ ଦେଖିଛି ।

(୨) ଆଉ ଏକ ତାଳପତ୍ରର ଦାର୍ଢ଼୍ୟତା ଭକ୍ତି ପୋଥି ମୁଁ ଦେଖିଲି । ଏହାର ଲେଖନକାର ହେଉଛନ୍ତି – ସାନଖେମୁଣ୍ଡି ରାଜ୍ୟର ଖୋଲଡି ଗ୍ରାମ ନିବାସୀ ସ୍ୱର୍ଗତ ଉଦୟନାଥ ପଟ୍ଟନାୟକ । ଏହି ପୋଥିରେ ମହୁରୀ ରାଜ୍ୟ ଡ଼ୁଗ୍ରି ଗ୍ରାମର ଉଲ୍ଲେଖ ଅଛି ।

(୩) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସଂଗ୍ରହାଳୟରେ ଥିବା ଏକ ତାଳପତ୍ରର ଦାର୍ଢ଼୍ୟତା ଭକ୍ତି ପୋଥିରେ "ମହୁରୀ ରାଜ୍ୟ ଡ଼ୁଗ୍ରି ଗ୍ରାମ । ସେ ଗ୍ରାମେ ଅଟେ ମୋ ବିଶ୍ରାମ" ବୋଲି ଲେଖା ଅଛି । ଏହି ତାଳପତ୍ର ବହି ଡ଼ୁଗ୍ରି ନିକଟସ୍ଥ ପଥରା ଗ୍ରାମ ନିବାସୀ ଶ୍ରୀ ସୀତାରାମ ମହାନ୍ତି ଦେଖିଥିବା କଥା ଏକ ପ୍ରବନ୍ଧରେ ଲେଖିଛନ୍ତି ।

(୪) ବିଶିଷ୍ଟ ଐତିହାସିକ ସ୍ୱର୍ଗତ ଜଗବନ୍ଧୁ ସିଂହ ତାଙ୍କର 'ପ୍ରାଚୀନ ଉତ୍କଳ' ବହିରେ ଲେଖିଛନ୍ତି ଯେ କବି ରାମଦାସଙ୍କ ଘର ବ୍ରହ୍ମପୁର ନିକଟବର୍ତ୍ତୀ ଡ଼ୁଗ୍ରି ଗ୍ରାମ । ଉକ୍ତ ବହିରେ ସେ 'ଦାର୍ଢ଼୍ୟତା ଭକ୍ତି ରସାମୃତ' ବହିରୁ ଉଦ୍ଧୃତ ଦେଇଛନ୍ତି "ମହୁରୀ ରାଜ୍ୟ ଡ଼ୁଗ୍ରି ଗ୍ରାମ । ସେ ଗ୍ରାମେ ଅଟେ ମୋ ଆଶ୍ରମ" ॥ ସ୍ୱର୍ଗତ ସିଂହ ନିଶ୍ଚୟ କୌଣସି ତାଳପତ୍ର କିମ୍ବା ଛପା 'ଦାର୍ଢ଼୍ୟତା ଭକ୍ତି' ବହିରୁ ଏହି ଉଦ୍ଧୃତ ପ୍ରକାଶ କରିଛନ୍ତି । ଏଠାରେ ଲକ୍ଷ୍ୟ କରିବା କଥା ଯେ "ବିଶ୍ରାମ" ସ୍ଥଳେ "ଆଶ୍ରମ" ର ଉଲ୍ଲେଖ ଅଛି ।

(୫) ସ୍ୱର୍ଗତ ଧ୍ୟାନ ସୁନ୍ଦର ରାଜଗୁରୁ ତାଙ୍କ 'ପ୍ରବନ୍ଧାବଳୀ' ବହିରେ ରାମ ଦାସ ଡ଼ୁରୁ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ବୋଲି ଲେଖିଛନ୍ତି ।

(୬) ପଥରା ଗ୍ରାମ ନିବାସି ଶ୍ରୀ ସୀତାରାମ ମହାନ୍ତି 'ଭକ୍ତକବି ରାମଦାସ ଓ ଦାର୍ଢ୍ୟତା ଭକ୍ତି ରସାମୃତ' ଶୀର୍ଷକ ଏକ କ୍ଷୁଦ୍ର ପ୍ରବନ୍ଧ ଲେଖିଛନ୍ତି । ଯେଉଁଥିରେ ସେ ମତ ଦେଇଛନ୍ତି "କିନ୍ତୁ ପ୍ରକୃତରେ ମୋର ଗ୍ରାମ ସ୍ଥାନରେ 'ଡ଼ୁରୁଗ୍ରାମ' ହେବା କଥା । କାରଣ କବି ଆତ୍ମ ପରିଚୟ ଦେଲା ବେଳେ ମହୁରି ରାଜ୍ୟ ମୋର ଗ୍ରାମ । ସେ ଗ୍ରାମେ ମୋହର ଆଶ୍ରମ କହିବାରେ କଥାଟା ସ୍ପଷ୍ଟ ହେଉନାହିଁ । କିନ୍ତୁ ଡ଼ୁରୁଗ୍ରାମ କହିଲେ ତାହା ଅତ୍ୟନ୍ତ ସ୍ପଷ୍ଟ ହୋଇପଡ଼େ ।"

(୭) ମୋ ମତରେ କବି ରାମଦାସ ଗୋଟିଏ ଧାଡ଼ିରେ ମୋର ଓ 'ମୋହର ହୁଏତ ଲେଖି ନଥିବେ । ତେଣୁ ମୋର ସ୍ଥାନରେ ଡ଼ୁରୁ ଲେଖିଥିବା ବିଶ୍ୱାସ ଯୋଗ୍ୟ । ତେବେ ଯେ ଗ୍ରାମେ ଅଟେ ମୋ ବିଶ୍ରାମ ସ୍ଥଳେ "ସେ ଗ୍ରାମେ ଅଟେ ମୋ ଆଶ୍ରମ" ହୁଏତ କବି ସ୍ୱହସ୍ତ ଲିଖିତ ପୋଥିରେ ଲେଖିଥିବେ । କାରଣ 'ବିଶ୍ରାମ' ଶବ୍ଦ ଅପେକ୍ଷା 'ଆଶ୍ରମ' ଶବ୍ଦ ଅଧିକ ଯୁକ୍ତିଯୁକ୍ତ ମନେହୁଏ । କବି ନିଜେ ମଠରେ ବାସ କରୁଥିବା ଜଣାଯାଏ । କାଳକ୍ରମେ ମୂଳ ତାଳପତ୍ର ପୋଥିରେ ନକଲ ବେଳେ ଲେଖକ କାରଙ୍କ ତ୍ରୁଟି ବା ପାଠ କର୍ତ୍ତାଙ୍କ ଭ୍ରମ ଯୋଗୁଁ ଏହିପରି କେତେକ ପଦର ପରିବର୍ତ୍ତନ ହୋଇଥାଇ ପାରେ ।

(୮) ଡ଼କ୍ଟର ହରେକୃଷ୍ଣ ମହତାବ ତାଙ୍କର ଓଡ଼ିଶା ଇତିହାସ ଦ୍ୱିତୀୟ ଖଣ୍ଡରେ ଭକ୍ତକବି ରାମଦାସ ଗଞ୍ଜାମ ଜିଲ୍ଲାର ମହୁରି ରାଜ୍ୟ ଅନ୍ତର୍ଗତ ଡ଼ୁରା ଗ୍ରାମର ଅଧିବାସୀ ଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

(୯) ଗୋଟିଏ ପୁରୁଣା ଛିଣ୍ଡା 'ଦାର୍ଢ୍ୟତା ଭକ୍ତି' ଛପାବହି ମୁଁ ଦେଖିଲି । ବହିଟିରୁ ଛପା ସମୟ ଜଣାଗଲା ନାହିଁ, କାରଣ ପ୍ରଥମ ଓ ଶେଷରୁ କେତେପୃଷ୍ଠା ନଷ୍ଟ ହୋଇ ଯାଇଛି । ତେବେ ବହିଟି ଦେଖି ମନେ ହେଲା ପ୍ରାୟ ୭୦ କ ୮୦ ବର୍ଷ ତଳର ଛପା । ଏହି ବହିର ଦ୍ୱିତୀୟ ଖଣ୍ଡ ଶେଷରେ "ମଧୁଖି ରାଜ୍ୟ ଝୁର ଗ୍ରାମ" ଲେଖାଅଛି । ଡ଼ୁରି ସ୍ଥାନରେ ଭୁଲରେ ନିଶ୍ଚୟ 'ଝୁର' ବୋଲି ଛପାଯାଇଛି ।

(୧୦) ସମାଲୋଚକ ଅଧ୍ୟାପକ ଶ୍ରୀ ପଠାଣୀ ପଟ୍ଟନାୟକ ତାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ବହିରେ ରାମ ଦାସଙ୍କ ବାସସ୍ଥାନ ବ୍ରହ୍ମପୁର ନିକଟବର୍ତ୍ତୀ ଡ଼ୁରି ଗ୍ରାମ ବୋଲି ଉଲ୍ଲେଖ କରିଛନ୍ତି ।

(୧୧) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମଧ୍ୟ ରାମ ଦାସଙ୍କ ଉପରେ ଆଲୋଚନା ପ୍ରସଙ୍ଗରେ ଦାର୍ଢ୍ୟତା ଭକ୍ତିରୁ ଏକ ଉଦ୍ଧୃତି ଦେଇଛନ୍ତି—

ମଦ୍ଧୁଖି ରାଜ୍ୟେ ଡ଼ୁରି ଗ୍ରାମ ।
ସେ ଗ୍ରାମେ ମୋହର ଆଶ୍ରମ ॥

(୧୨) ବରିଷ୍ଠ ଐତିହାସିକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ମଧ୍ୟ ରାମଦାସ ଡ଼ୁରି ଗ୍ରାମରେ ଜନ୍ମ ଲଭିଥିବା କଥା ଲେଖିଛନ୍ତି ।

ଉପର୍ଯ୍ୟୁକ୍ତ ତଥ୍ୟାବଳୀରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଭକ୍ତକବି ରାମଦାସ ଡ଼ୁରି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।

## —କବିଙ୍କ ଜନ୍ମକାଳ—

ଅନ୍ୟାନ୍ୟ ଅଧିକାଂଶ ପ୍ରାଚୀନ ଲେଖକମାନଙ୍କ ପରି ଭକ୍ତକବି ରାମଦାସ ଏହି ଗ୍ରନ୍ଥରେ ନିଜର ଜନ୍ମ ବର୍ଷ ବା

କାଳ ସମ୍ପର୍କରେ କୌଣସିଠାରେ ସୂଚନା ଦେଇ ନାହାନ୍ତି । ତେବେ ଦାର୍ଢ୍ୟତା ଭକ୍ତି ରସାମୃତର ପ୍ରଥମ ଖଣ୍ଡ, ସେ ଖୁର୍ଦ୍ଧାର ଗଜପତି ରାଜା ଶ୍ରୀ ବୀରକେଶରୀ ଦେବଙ୍କ ୪୨ ଅଙ୍କରେ ଓ ଦ୍ଵିତୀୟ ଖଣ୍ଡ ଶ୍ରୀ ଦିବ୍ୟସିଂହ ଦେବଙ୍କ ପ୍ରଥମ ଅଙ୍କରେ ସମ୍ପୂର୍ଣ୍ଣ କରିଥିବା କଥା ଉଲ୍ଲେଖ କରିଛନ୍ତି । ଶ୍ରୀ ବୀର କେଶରୀ ଦେବଙ୍କ ୪୨ ଅର୍ଥାତ୍ ଖ୍ରୀ: ୧୭୬୯ କମ୍ବା ୧୭୭୦ର ବହୁପୂର୍ବରୁ କବି ଜନ୍ମ ଗ୍ରହଣ କରିଥିବେ । ଯଦି କବିଙ୍କ ଉକ୍ତ ଗ୍ରନ୍ଥ ରଚନା କରିବା ବେଳକୁ ୩୦ କମ୍ବା ୪୦ ବର୍ଷ ଭିତରେ ବୟସ ହୋଇଥିବ— ତେବେ ସେ ଖ୍ରୀ: ୧୭୩୦ଠାରୁ ୧୭୪୦ ସାଲ ଭିତରେ ଜନ୍ମଗ୍ରହଣ କରିଥିବେ ।

କବି କେବେ ମୃତ୍ୟୁ ଲଭିଥିଲେ ତାହା ମଧ୍ୟ ଜଣାଯାଏ ନାହିଁ । କବି ଦୀର୍ଘାୟୁ ଥିଲେ, କାରଣ ପ୍ରଥମ ଖଣ୍ଡ ରଚନା କରିବାର ୩୬ ବର୍ଷ ପରେ ସେ ଦ୍ଵିତୀୟ ଖଣ୍ଡ ରଚନା କରିଥିବା କଥା ନିଜେ କହିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ, ଭକ୍ତକବି ରାମଦାସ ୮୦ ବର୍ଷ ଯାଏଁ ଜୀବିତ ଥିଲେ ବୋଲି ଅନୁମାନ କରିଛନ୍ତି ।

## —ଭକ୍ତକବି ରାମଦାସଙ୍କ ବଂଶାବଳୀ—

ସ୍ୱର୍ଗତ ଶ୍ୟାମ ସୁନ୍ଦର ରାଜଗୁରୁ ଓ ଶ୍ରୀ ସୀତାରାମ ମହାପାତ୍ରଙ୍କ ପ୍ରବନ୍ଧରୁ ଆନୀତ କବିଙ୍କ ବଂଶାବଳୀ ନିମ୍ନରେ ପ୍ରଦତ୍ତ ହେଲା ।



ଭକ୍ତକବି ରାମଦାସ ଦୀକ୍ଷାଗୁରୁ ଥିଲେ । ତାଙ୍କ ବଂଶଧର ମାନେ ଏବେ ବି ଦୀକ୍ଷାଗୁରୁ ଭାବରେ ସମ୍ମାନିତ । ଦୁଡ଼ୁରା ଓ ପାଖାପାଖି ଅଞ୍ଚଳରେ ଏମାନଙ୍କର ବହୁ ଶିଷ୍ୟ ଅଛନ୍ତି । ରାମଦାସଙ୍କ ପରି ଏମାନେ ମଧ୍ୟ ରାମାନନ୍ଦ ସଂପ୍ରଦାୟ ଅନ୍ତର୍ଭୁକ୍ତ । ଏମାନେ ଶ୍ରୀ ବୈଷ୍ଣବ ।

ଜରଡ଼ା ନିକଟବର୍ତ୍ତୀ ସୁବର୍ଣ୍ଣପୁର ଗ୍ରାମ ମଠର ମହନ୍ତ ଭକ୍ତକବି ରାମଦାସଙ୍କ ବିଦ୍ୟାଗୁରୁ ଓ ଦୀକ୍ଷା ଗୁରୁ ଥିବା ଜଣାଯାଏ । ତାଙ୍କ ଗୁରୁଙ୍କ ନାମ ଗଦାଧର ଦାସ । ଗୁରୁଙ୍କଠାରୁ ସେ ସଂସ୍କୃତ ଅଧ୍ୟୟନ କରିଥିଲେ । ରାମଦାସ ଦୁଡ଼ୁରା ଗ୍ରାମରେ ଏକ ସଂସ୍କୃତ ପାଠଶାଳା ଖୋଲି ଛାତ୍ରମାନଙ୍କୁ ପଢ଼ାଉଥିଲେ । ସେ ମଧ୍ୟ ଗାଁର କାଜି ଥିଲେ । ବଂଶାନୁକ୍ରମରେ ଏହି କାର୍ଜି କାମ କରାଯାଉଥିଲା । "ଏହାଙ୍କ ବଂଶଧର (ନାତିଙ୍କ ନାତି) ପରଶୁରାମ ଦାସ ମଧ୍ୟ ବର୍ତ୍ତମାନ କାର୍ଜି ହୋଇଅଛନ୍ତି" ବୋଲି ଶ୍ୟାମସୁନ୍ଦର ରାଜଗୁରୁ ଲେଖିଛନ୍ତି ।

ରାମଦାସ ଏକାଧାରରେ ଭକ୍ତକବି, ପଣ୍ଡିତ, ଶିକ୍ଷକ, ଦୀକ୍ଷା ଗୁରୁ ବା ମନ୍ତ୍ରଦାତା, ଗୃହୀ ବୈଷ୍ଣବ ତଥା କାର୍ଜି ଥିଲେ । ଦୁଡ଼ୁରା ଗ୍ରାମର ଉପକଣ୍ଠରେ ଥିବା ଶ୍ମଶାନ ନିକଟସ୍ଥ ଶିବ ମନ୍ଦିର (ଶ୍ରୀ ମୁକ୍ତେଶ୍ୱରି ମନ୍ଦିର) ଏକ ନିକାଞ୍ଚନ ଓ ରମଣୀୟ ସ୍ଥାନରେ ଅବସ୍ଥିତ । ବାସ୍ତବିକ ଲେଖାଲେଖି କରିବା ପାଇଁ ଏହି ସ୍ଥାନକୁ କବି ବାଛି ନେଇଥିବା ବିଚିତ୍ର ନୁହେଁ । ଏହି ମନ୍ଦିର ପଛପଟେ ଥିବା ଏକ ପ୍ରକାଣ୍ଡ ବାହାଡ଼ା ଗଛ ମୂଳେ କବି କୁଆଡ଼େ ଲେଖା-ଲେଖି କରୁଥିଲେ ବୋଲି ପ୍ରବାଦ ଅଛି । କବି କୁଆଡ଼େ ବେତାଳ ସାଧନା କରିଥିଲେ ବୋଲି ଶୁଣାଯାଏ । ଏହି ଝାଡ଼ଳ ମୁଁ ବୁଲି ଦେଖିଛି ।

## — କବିଙ୍କ ଅନ୍ୟାନ୍ୟ ରଚନା—

ରାମଦାସ 'ଦାର୍ଢ୍ୟତାଭକ୍ତି ରସାମୃତ' (୧ମ ଓ ୨ୟ ଖଣ୍ଡ) ବ୍ୟତୀତ 'ରାମ ରସାମୃତ' ନାମକ ଅନ୍ୟ ଏକ ଗ୍ରନ୍ଥ ରଚନା କରିଥିବା ଜଣାଯାଏ । ପଣ୍ଡିତ ବିନାୟକ ମିଶ୍ରଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ', ମହନ୍ତ.ବିଙ୍କ 'ଓଡିଶା ଇତିହାସ, ଶ୍ରୀ ଜାନକୀ ବଲ୍ଲଭ ମହାନ୍ତିଙ୍କ 'ଓଡ଼ିଆ ସାହିତ୍ୟ' (ଇଂରାଜୀ) ଓ ଅନସୂୟା ପ୍ରସାଦ ପାଠକଙ୍କ ସମ୍ପାଦିତ 'ଉତ୍କଳ ସାହିତ୍ୟ କା ଇତିହାସ' (ହିନ୍ଦି) ବହିରେ ଉଲ୍ଲେଖ ଅଛି ଯେ କବି ରାମଦାସ 'ରାମ ରସାମୃତ' ନାମକ ଅନ୍ୟ ଏକ ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ଏହି ବହି ବର୍ତ୍ତମାନ କେଉଁଠି ଦେଖିବାକୁ ମିଳୁନାହିଁ । ରାମଦାସ ନିଶ୍ଚୟ ଏକାଧିକ ଗ୍ରନ୍ଥ ରଚନା କରିଥିବେ । କାରଣ ଆଗରୁ କିଛି ନ ଲେଖି ସେ ହଠାତ୍ 'ଦାର୍ଢ୍ୟତାଭକ୍ତି' ପରି ଏକ ଉନ୍ନତ ପୁରାଣ ଲେଖି ପାରିବା ହୁଏତ ସମ୍ଭବ ନୁହେଁ । ଖଣ୍ଡିଏ ବହି ଲେଖି ସେ ନୀରବ ହୋଇ ରହିଯିବା ବିଶ୍ୱାସ କରି ହେଉନାହିଁ । ଅବଶ୍ୟ କବି ଟିକିଏ ହେଲା ପ୍ରକୃତିର ମନେ ହୁଏ । କାରଣ ୧ମ ଖଣ୍ଡ ଲେଖିବାର ୩୨ ବର୍ଷ ପରେ ସେ ୨ୟ ଖଣ୍ଡ ରଚନା ଆରମ୍ଭ କରିଥିବା କଥା ଲେଖିଛନ୍ତି । 'ରାମ ରସାମୃତ' ଛଡ଼ା ସେ 'ଶ୍ରୀ ରାମ ବିଳାସ' ଓ 'ଶ୍ରୀରାମ ସନ୍ଦର୍ଭ' ନାମକ ଆଉ ଦୁଇଟି ଗ୍ରନ୍ଥ ରଚନା କରିଥିଲେ ବୋଲି ଓଡ଼ୁରୁ ଗ୍ରାମବାସୀଙ୍କ ଠାରୁ ଶୁଣାଯାଏ । ଅବଶ୍ୟ ଏଥିରେ ସତ୍ୟତା କିଛି ନାହିଁ । ରାମଦାସଙ୍କ ଜଣେ ପୂର୍ବବର୍ତ୍ତୀ କବି ଧରାକୋଟର ରାଜପୁତ୍ର କାହ୍ନୁ ଦାସ 'ରାମ ରସାମୃତ ସିନ୍ଧୁ' ନାମକ ଏକ ଗ୍ରନ୍ଥ ରଚନା କରିଛନ୍ତି ।

ବଶିଷ୍ଟ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ରଙ୍କର ପ୍ରବନ୍ଧ 'ଓଡ଼ିଆ ଶିଳ୍ପ ଓ ସାହିତ୍ୟରେ ରାମାୟଣର ପ୍ରଭାବ'ରୁ ଜଣାଯାଏ ଯେ ସଂସ୍କୃତ 'ଆଧ୍ୟାତ୍ମ୍ୟ ରାମାୟଣ'—ରାମାନନ୍ଦୀ ସମ୍ପ୍ରଦାୟଙ୍କର ଏକ ଆଦରଣୀୟ ଗ୍ରନ୍ଥ । ଏହି ଗ୍ରନ୍ଥର ପ୍ରଥମ ଓଡ଼ିଆ ଅନୁବାଦ କରିଥିଲେ ହଳଧର ଦାସ । ଏହା ଖ୍ରୀ: ୧୬୮୨ ରେ ଲିଖିତ । ଶ୍ରୀ କେଦାରନାଥ ମହାପାତ୍ର ଉକ୍ତ ପ୍ରବନ୍ଧରେ ଲେଖିଛନ୍ତି— "ଏହି ସାମୟିକ ଅନ୍ୟ ଏକ ଗ୍ରନ୍ଥ ହେଉଛି — 'ଅଖିଳ ରସ ଚିନ୍ତାମଣି'—ରାଜ ବଂଶୀୟ ଶ୍ରୀ କୃଷ୍ଣଦେବଙ୍କ ପୁତ୍ର ଶ୍ରୀ ରାମଚନ୍ଦ୍ର ଦେବଙ୍କ ଅନୁଜ ପୀତାମ୍ବର ଦେବ ଏହି ଗ୍ରନ୍ଥର ପ୍ରଣେତା । ଗ୍ରନ୍ଥର ପ୍ରତ୍ୟେକ ପଦ ଆରମ୍ଭରେ 'ଅ' ଅକ୍ଷର ବ୍ୟବହୃତ ଓ ଗ୍ରନ୍ଥ ରଚନା ଶୈଳୀରେ ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ର ପ୍ରଭାବ ସ୍ପଷ୍ଟ ପ୍ରତି ଫଳିତ । ଗ୍ରନ୍ଥର ସ୍ଥାନେ ସ୍ଥାନେ ଶ୍ରୀ ରାମଦାସଙ୍କ ନାମରେ ଭଣିତା ଥିବାରୁ ସେ ଗ୍ରନ୍ଥର ପ୍ରକୃତ କବି ଥିବାର ମନେହୁଏ ଏବଂ ଗ୍ରନ୍ଥଟି ସ୍ୱୀୟ ପୃଷ୍ଠପୋଷକ ପୀତାମ୍ବର ଦେବଙ୍କ ନାମରେ ଭଣିତା କରିଥିଲେ । ଉକ୍ତ କବି 'ଦାର୍ଢ୍ୟତା ଭକ୍ତି'ର ରଚୟିତା ଭକ୍ତ ରାମଦାସଙ୍କ ଠାରୁ ଅଭିନ୍ନ ହୋଇଥିଲେ ଗ୍ରନ୍ଥଟି ରାଜା କେଶରୀ ଦେବଙ୍କ ରାଜତ୍ୱର ଶେଷ ଭାଗରେ ରଚିତ ହୋଇଥିବା ସ୍ଥିର କରାଯାଇପାରେ । କିନ୍ତୁ ଏହି ସିଦ୍ଧାନ୍ତ ଅନ୍ୟ ପ୍ରମାଣ ସାପେକ୍ଷ ।"

ବାସ୍ତବିକ ଶ୍ରୀ ମହାପାତ୍ରଙ୍କ ଉକ୍ତି ତାତ୍ପର୍ଯ୍ୟପୂର୍ଣ୍ଣ । ଏ ସମ୍ବନ୍ଧରେ ଅଧିକ ଗବେଷଣା ଆବଶ୍ୟକ । ରାମାନନ୍ଦ ସଂପ୍ରଦାୟର ଭକ୍ତ ରାମଭକ୍ତ କବି ରାମଦାସ ରାମ ସମ୍ପର୍କୀୟ ଅନ୍ୟ କେତେକ ଗ୍ରନ୍ଥ ହୁଏତ ଲେଖିଥିବେ ।

'ଦାର୍ଢ୍ୟତାଭକ୍ତି' ରଚୟିତା ରାମଦାସଙ୍କ ପୂର୍ବରୁ ଆଉ ଦୁଇଜଣ ରାମଦାସ ନାମକ କବି ଥିଲେ । ପଣ୍ଡିତ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ଶ୍ରୀ କେଦାରନାଥ ମହାପାତ୍ରଙ୍କ 'ଖୁରୁଧା ଇତିହାସ' ଓ ଶ୍ରୀ ସୁଦର୍ଶନ ଆଚାର୍ଯ୍ୟଙ୍କ 'ସାହିତ୍ୟ ଓ ସାହିତ୍ୟିକ' ବହିରୁ ଏ ବିଷୟ ଜଣାପଡ଼େ ।

କବି ଦିବାକର ଦାସ ତାଙ୍କର 'ଜଗନ୍ନାଥ ଚରିତାମୃତ'ରେ ଜଗନ୍ନାଥ ଦାସଙ୍କର ରାମଦାସ ନାମରେ ଏକ ଶିଷ୍ୟଥିବା କଥା ଲେଖିଛନ୍ତି । ଏହି ରାମଦାସ, ମୁକୁନ୍ଦଦେବଙ୍କ ୨ୟ ଅଙ୍କ ଅର୍ଥାତ୍ ଖ୍ରୀ: ୧୫୭୧ ରେ 'ଗୁପ୍ତଗୀତା' ରଚନା କରିଥିଲେ ।

ଶ୍ରୀ ଭକ୍ତରାମ ଦାସ ବୋଲି ଜଣେ ଭକ୍ତ, ମଥୁରା ନିକଟବର୍ତ୍ତୀ ଛତ୍ରୀ ଗାଦୀରୁ ଉତ୍କଳକୁ ଆସି ଜରଡ଼ା ରାଜ୍ୟର ସୁବର୍ଣ୍ଣପୁର ଗ୍ରାମରେ ଏକ ମଠ ପ୍ରତିଷ୍ଠା କରିଥିଲେ । ଜରଡ଼ା ରାଜା ଶ୍ରୀ ଶ୍ୟାମସୁନ୍ଦର ଦେବଙ୍କ ସମୟରେ ସେ 'ଶ୍ରୀ ରାମ ଭକ୍ତ ରସ ବଲ୍ଲୀ' ନାମରେ ଏକ ସଂସ୍କୃତ ଗ୍ରନ୍ଥ ଲେଖିଥିଲେ । ଏହା ତା ୨୩-୧୦-୧୭୪୫ ରେ ରଚିତ ବୋଲି ଶ୍ରୀ କେଦାରନାଥ ମହାପାତ୍ର ମତ ଦିଅନ୍ତି । ଭକ୍ତରାମ ଦାସଙ୍କ ମୃତ୍ୟୁ ପରେ ତାଙ୍କର ଜନୈକ ଶିଷ୍ୟ ବାଳକ ରାମ ଦାସ ଏହି ସଂସ୍କୃତ ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦ କରିଥିଲେ । ଏହାଙ୍କ ରଚିତ ଅନ୍ୟାନ୍ୟ ଗ୍ରନ୍ଥ ହେଲା 'ରାମାନନ୍ଦ ଲୀଳାମୃତ' ବା 'ରାମାନନ୍ଦ ଚରିତାମୃତ' ।

ଏଠାରେ କୌତୁହଳ ସହ ଲକ୍ଷ୍ୟ କରିବା କଥା ଯେ 'ଦାର୍ଢ୍ୟତା ଭକ୍ତି' ରଚୟିତା ରାମଦାସ ମଧ୍ୟ ଜରଡ଼ା ସୁବର୍ଣ୍ଣପୁର ମଠର ମହନ୍ତଙ୍କ ଶିଷ୍ୟ ଥିଲେ । ମାତ୍ର ତାଙ୍କ ଗୁରୁଙ୍କ ନାମ ଥିଲା ଗଦାଧର ଦାସ ।

## —ଦାର୍ଢ୍ୟତାଭକ୍ତି ରସାମୃତ—

### ( ଆଲୋଚନା )

( କ ) **ନାମକରଣ** :— ଏହି ଗ୍ରନ୍ଥର ନାମକରଣରେ ବ୍ୟାକରଣ ଗତ ଅଶୁଦ୍ଧି ଦେଖାଯାଏ । ଦୃଢ଼ଭକ୍ତି ବା ଦାର୍ଢ୍ୟଭକ୍ତି ନାମ ନଦେଇ ଏହାକୁ ଦାର୍ଢ୍ୟତାଭକ୍ତି ନାମକରଣ କରିବାର ଉଦ୍ଦେଶ୍ୟ ବୁଝାଯାଏ ନାହିଁ । ରାମଦାସ ଏହି ଗ୍ରନ୍ଥର କୌଣସି କୌଣସି ଅଧ୍ୟାୟ ଶେଷରେ ଦାର୍ଢ୍ୟ ଭକ୍ତି ବୋଲି ଲେଖିଛନ୍ତି । ଯଥା—"ଏ ଦାର୍ଢ୍ୟଭକ୍ତି କଥା ମାନ, ମଠଦଶ ଅଧ୍ୟାୟରେ ସମ୍ପୂର୍ଣ୍ଣ ।"

ତେଣୁ ପଣ୍ଡିତ ବିନାୟକ ମିଶ୍ରଙ୍କ ମତ ଅନୁଯାୟୀ କବି ରାମଦାସ କେବଳ ସୁନ୍ଦର ଶୁଣାଯିବା ଉଦ୍ଦେଶ୍ୟରେ 'ଦାର୍ଢ୍ୟତା ଭକ୍ତି' ନାମକରଣ କରିଥିବା ଅନୁମାନ । ପଣ୍ଡିତ ନୀଳକଣ୍ଠ ଦାଶ ତାଙ୍କର 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ପୁସ୍ତକରେ ଭକ୍ତକବି ରାମଦାସଙ୍କୁ ତୀବ୍ର ଆକ୍ଷେପ କରି କହିଛନ୍ତି ଯେ ସେ (ରାମଦାସ) କୁଆଡେ ପାଠ ଶାଠ ବିଶେଷ କରି ଜାଣି ନଥିଲେ । ଅକ୍ଷର ଚିହ୍ନି ଓଡ଼ିଆ ଭାଗବତ ପଢ଼ିବା ଓ ଶେଦା ଲେଖିବା ଛଡ଼ା ଆଉକିଛି ପଢ଼ା ଲେଖା ତାଙ୍କର ଥିଲାପରି ଲାଗୁନାହିଁ । 'ଦାର୍ଢ୍ୟତା ଭକ୍ତି' ଶବ୍ଦରୁ ଏହା ବେଶ ଜଣା ପଡ଼େ ।

କିନ୍ତୁ କେଉଁ ଭିତ୍ତି ବଳରେ ପଣ୍ଡିତ ନୀଳକଣ୍ଠ କବି ରାମ ଦାସଙ୍କୁ ଅଳ୍ପ ପାଠୁଆ କହିଲେ ତାହା ଜଣାପଡ଼େ ନାହିଁ । ଖାଲି କଣ ଏହି ଗ୍ରନ୍ଥର ନାମକରଣ ଯୋଗୁଁ ? ପଣ୍ଡିତ ନୀଳକଣ୍ଠଙ୍କ ବହୁ ପୂର୍ବରୁ ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ନିଜର 'ପ୍ରବନ୍ଧାବଳୀ' (୧୯୦୯ ପୂର୍ବର ଲେଖା) ରେ ରାମଦାସ ଏକ ସଂସ୍କୃତ ଶିକ୍ଷକ

ଥିଲେ ବୋଲି ଲେଖିଛନ୍ତି । ତେଣୁ ରାମଦାସ ନିଜର ମୂର୍ଖମୀ ଯୋଗୁଁ ଏହାକରି ନାମକରଣ କରିଥିଲେ କହିବା ଠିକ ନୁହେଁ । ତେଣୁ କେବଳ ଭଲ ଶୁଣାଯିବା ଉଦ୍ଦେଶ୍ୟରେ 'ଦାର୍ଢ୍ୟତାଭକ୍ତି' ନାମ ଦେଇଥିବା ଅଧିକ ଯୁକ୍ତିଯୁକ୍ତ ମନେ ହୁଏ ।

(ଖ) **ରଚନା କାଳ** (୧ମ ଖଣ୍ଡ) : ଏହି 'ଦାର୍ଢ୍ୟତା ଭକ୍ତି ରସାମୃତ' କୁ କବି ଦୁଇଟି ଖଣ୍ଡରେ ସମାପ୍ତ କରିଥିଲେ । ଏହି ଦୁଇଟି ଖଣ୍ଡର ରଚନା କାଳ ସମ୍ପର୍କରେ ସେ ପ୍ରତ୍ୟେକ ଖଣ୍ଡର ଶେଷ ଅଧ୍ୟାୟରେ ସୂଚନା ଦେଇଛନ୍ତି । ବର୍ତ୍ତମାନ ପ୍ରଥମ ଖଣ୍ଡ କେବେ ସମାପ୍ତ ହୋଇଥିଲା ତାହା ଦେଖିବା । ପ୍ରଥମ ଖଣ୍ଡରେ ପଚିଶଟି ଅଧ୍ୟାୟ ଅଛି । ଏହାର ଶେଷ ଅଧ୍ୟାୟ ଅର୍ଥାତ୍ ୨୫ ଅଧ୍ୟାୟରେ କବି ଲେଖିଛନ୍ତି

ଏ ଦାର୍ଢ୍ୟଭକ୍ତି କଥାମାନ ।
ପଚିଶ ଅଧ୍ୟାୟରେ ସମ୍ପୂର୍ଣ୍ଣ ॥
ଶ୍ରୀ ବୀର କେଶରୀ ଦେବଙ୍କ ।
ସମ୍ପୂର୍ଣ୍ଣ ବୟାଳିଶ ଅଙ୍କ ॥

ଏହି ବୀରକେଶରୀ ଦେବଙ୍କ ରାଜତ୍ୱର ଆରମ୍ଭ ଓ ଶେଷ କେଉଁ ସାଲରେ ହୋଇଥିଲା ସେ ସମ୍ପର୍କରେ ଐତିହାସିକ ମାନେ ଭିନ୍ନ ଭିନ୍ନ ମତ ଦିଅନ୍ତି । ଏଣୁ ସଠିକ ରାଜତ୍ୱ କାଳ ନିର୍ଦ୍ଧାରଣ କରିବା କଷ୍ଟକର । ଓଡ଼ିଶା ଇତିହାସ ଓ ଓଡ଼ିଆ ସାହିତ୍ୟର ଇତିହାସ ଲେଖିଥିବା କେତେ ଜଣ ଐତିହାସିକ ତଥା ସମାଲୋଚକ ଶ୍ରୀବୀରକେଶରୀ ଦେବଙ୍କ ରାଜତ୍ୱ କାଳ ସମ୍ପର୍କରେ ଯାହା ଲେଖିଛନ୍ତି ତାହା ନିମ୍ନରେ ପ୍ରଦତ୍ତ ହେଲା ।

ଖ୍ରୀ: ୧୭୩୬ – ୧୭୯୮ – ଡ: ହରେକୃଷ୍ଣ ମହତାବ
(ଓଡ଼ିଶା ଇତିହାସ)

ଖ୍ରୀ: ୧୭୩୯ – ୧୭୮୧ – ଡ଼: ଏନ୍. କେ ସାହୁ
ଡ଼ ପି. କେ. ମିଶ୍ର
ଓ ଡ: ଜେ. କେ. ସାହୁ ।
(History of orissa
1st Edn, 1979)

ଖ୍ରୀ: ୧୭୩୨ – ୧୭୮୦ – ସ୍ୱର୍ଗତ ଜଗବନ୍ଧୁ ସିଂହ

ଖ୍ରୀ: ୧୭୩୬ – ୧୭୭୩ – ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ

ଖ୍ରୀ: ୧୭୩୬ – ୧୭୯୩ ଚକ୍ରଧର ମହାପାତ୍ର

ଖ୍ରୀ: ୧୭୩୬ – ୧୭୯୩ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

ଖ୍ରୀ: ୧୭୩୬ – ୧୭୯୩ – ଅଧ୍ୟାପକ ପଠାଣୀ ପଟ୍ଟନାୟକ

ଖ୍ରୀ: ୧୭୩୬ – ୧୭୯୩ – କେଦାରନାଥ ମହାପାତ୍ର

ତେବେ ଖ୍ରୀ: ୧୭୩୬ ରୁ ଖ୍ରୀ: ୧୭୯୩ ଯାଏଁ ଶ୍ରୀ ବୀର କେଶରୀ ଦେବଙ୍କ ରାଜତ୍ୱ କାଳ ଥିବା ସମ୍ପର୍କରେ ଅଧିକାଂଶ ଲେଖକ ଏକମତ ଜଣାଯାଏ । ବିଶିଷ୍ଟ ଐତିହାସିକ ଶ୍ରୀ କେଦାର ନାଥ ମହାପାତ୍ର ଏହି ରାଜତ୍ୱ କାଳ ସମ୍ପର୍କରେ ବ୍ୟାପକ ଗବେଷଣା କରିଥିବା ଜଣାଯାଏ । ସେ ମତ ଦଅନ୍ତି ଯେ ଏହି ରାଜତ୍ୱ କାଳ ୧୭୩୬ ରୁ ୧୭୯୩ ଯାଏଁ ଥିଲା ବୋଲି ନିଃସନ୍ଦେହରେ ସ୍ଥିର କରାଯାଇପାରେ । ବର୍ତ୍ତମାନ ବୀରକେଶରୀ ଦେବଙ୍କ ରାଜତ୍ୱ କାଳ ଧରି ନିଆଯାଉ ୧୭୩୬ ରୁ ୧୭୯୩ ଯାଏଁ । ଏହାଙ୍କ ରାଜତ୍ୱ କାଳର ୪୨ ଅଙ୍କରେ 'ଦାଣ୍ଡୀ ଯଉଭକ୍ତି' ର ୧୨ ଖଣ୍ଡ ରଚନା ସମାପ୍ତ ହୋଇଥିଲା ।

ଶ୍ରୀ ସୀତାରାମ ମହାନ୍ତି ତାଙ୍କ ପ୍ରବନ୍ଧରେ ଏହି ରାଜୁତିକାଳର ପ୍ରାରମ୍ଭ ୧୭୩୭ ସାଲ ଧରି ସେଥିରେ ୪୨ ବର୍ଷ ମିଶାଇ ମତ ଦେଇଛନ୍ତି ଯେ ପ୍ରଥମଖଣ୍ଡ ୧୭୭୯ ସାଲରେ ସମ୍ପୂର୍ଣ୍ଣ ହୋଇଥିଲା । କିନ୍ତୁ ୪୨ ଅଙ୍କ ଅର୍ଥ ନୁହେଁ ଯେ ଏହା ୪୨ ବର୍ଷ । ଏହି ଅଙ୍କ ଗଣନାର ଏକ ପଦ୍ଧତି ଅଛି । ଏ ସମ୍ପର୍କରେ ଜଗବନ୍ଧୁ ସିଂହ ଲେଖିଛନ୍ତି ଯେ ଉତ୍କଳରେ ସୁନିଆଁ ଦିନଠାରୁ ବର୍ଷ ଆରମ୍ଭ ହୁଏ ଓ ଏହିଦିନ ଓଡ଼ିଶା ରାଜାଙ୍କ ଅଙ୍କ କଟାଯାଏ । ଅଙ୍କ କଟା ଅର୍ଥ ନୂତନ ବର୍ଷର ପ୍ରାରମ୍ଭ । "ଏହି ଅଙ୍କ ଗଣନା କରିବାର ନିୟମ ଏହି ଯେ ୧, ୬, ୧୬, ୨୦, ୨୬, ୩୦, ୩୬, ୪୦, ପ୍ରଭୃତି ସଂଖ୍ୟା ତ୍ୟାଜ୍ୟ । ୧୦ ବ୍ୟତୀତ ଯେ ଅଙ୍କର ଡାହାଣରେ ୦ ଥାଏ, ୧ ଓ ଯାହାର ଡାହାଣରେ ୬ ଥାଏ ଏବଂ ୬ ତ୍ୟାଜ୍ୟ ।"

ବିଶିଷ୍ଟ ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ର ନିମ୍ନ ପ୍ରକାରେ ଗଜପତି ବୀର କେଶରୀ ଦେବଙ୍କ ଅଙ୍କ ଗଣନା କରିଛନ୍ତି ।

| ସୁନିଆଁ ତାରିଖ | ଅଙ୍କ |
|---|---|
| ୫-୯-୧୭୩୬ ରୁ | ୨ ଅଙ୍କ |
| ୨୭-୮-୧୭୩୭ ରୁ | ୩ ଅଙ୍କ |
| ୧୫-୮-୧୭୩୮ ରୁ | ୪ ଅଙ୍କ |
| ୩-୯-୧୭୩୯ ରୁ | ୫ ଅଙ୍କ |

× × × ×

| | |
|---|---|
| ୨୩–୯–୧୯୬୮ ରୁ | ୪୦ ଅଙ୍କ |
| ୧୨–୯–୧୬୬୯ ରୁ | ୪୨ ଅଙ୍କ |
| ୧–୯–୧୭୭୦ ରୁ | ୪୩ ଅଙ୍କ |

× × ×

| | |
|---|---|
| ୨୯–୮–୧୭୯୨ ରୁ | ୭୧ ଅଙ୍କ |
| ୧୭–୯–୧୯୭୩ ରୁ | ୭୧ ଅଙ୍କ ଶେଷ । |

ଏହି ୭୧ ଅଙ୍କରେ ବୀର କେଶରୀ ଦେବଙ୍କ ମୃତ୍ୟୁ ହୋଇଥିଲା ବୋଲି ଶ୍ରୀ କେଦାରନାଥ ମହାପାତ୍ର କହନ୍ତି । କିନ୍ତୁ ଶ୍ରୀ ଚକ୍ରଧର ମହାପାତ୍ର ୭୩ ଅଙ୍କରେ ବୀରକେଶରୀ ଦେବଙ୍କ ମୃତ୍ୟୁ ହୋଇଥିଲା ବୋଲି ମତ ଦିଅନ୍ତି ।

"ଶ୍ରୀ ବୀରକେଶରୀ ଦେବଙ୍କ ସମ୍ପୂର୍ଣ୍ଣ ବିଂଶତି ଅଙ୍କ" ରେ ଯଦି ପ୍ରଥମ ଖଣ୍ଡ ସମ୍ପୂର୍ଣ୍ଣ ହୋଇଥିଲା, ତେବେ ଶ୍ରୀ କେଦାର-ନାଥ ମହାପାତ୍ରଙ୍କ ଗଣନା ପ୍ରକାରେ ହିସାବ କଲେ ଏହା ୧-୯-୧୭୭୦ ସାଲ ଅର୍ଥାତ୍ ଯେଉଁଦିନ ଠାରୁ ୪୨ ଅଙ୍କ ଶେଷ ହୋଇ ୪୩ ଅଙ୍କ ଆରମ୍ଭ ହେଲା ସେହି ଦିନ ଧରିପିବ । ୧୭୩୬ ସାଲରୁ ୪୨ ଅଙ୍କ ଅର୍ଥାତ୍ ୩୪ ବର୍ଷ ହିସାବ କଲେ ବି ଏହା ୧୭୭୦ ସାଲ ପଡ଼ୁଛି । ଡ଼: ମହତାବ ତାଙ୍କର ଓଡ଼ିଶା ଇତିହାସରେ 'ଦେ.ଡ଼ି ୍ୟତାଭକ୍ତି ରସାମୃତ'ର ରଚନା କାଳ ଆନୁମାନିକ ୧୭୭୦ ଖ୍ରୀଷ୍ଟାବ୍ଦ ବୋଲି ଲେଖିଛନ୍ତି ।

କିନ୍ତୁ ଶ୍ରୀ କେଦାରନାଥ ମହାପାତ୍ର, ଏହି ପ୍ରଥମ ଖଣ୍ଡ ୭-୧୧-୧୭୬୮, ତୁଳ ୨୪ ଦିନ କାର୍ତ୍ତିକ କୃଷ୍ଣ ଏକାଦଶୀ ଯୁକ୍ତ ଦ୍ୱାଦଶୀରେ ରଚିତ ବୋଲି ମତ ଦିଅନ୍ତି । ସେ ଦିନ ହସ୍ତା ନକ୍ଷତ୍ର

ଥିଲା, ଉପର ବେଳାକୁ ଚନ୍ଦ୍ର ନକ୍ଷତ୍ର ପଡ଼ିଥିବା ସମ୍ଭବପର ବୋଲି — ସେ କହିଛନ୍ତି । 'ଦାର୍ଢ୍ୟତାଭକ୍ତି' ରୁ ନିମ୍ନଲିଖିତ ଉଦ୍ଧୃତି ଦେଇ ସେ ଏହି ମତ ଦେଇଛନ୍ତି—

ଶ୍ରୀ ବୀର କେଶରୀ ଦେବଙ୍କ ।
ସମ୍ପୂର୍ଣ୍ଣ ବ୍ୟାଳିଶ ଅଙ୍କ ॥
ଯେ ଭୁଲ ପଞ୍ଚମୀ ଦିବସେ ।
ଶୁଦ୍ଧ ସକଳ ହରିବାସେ ॥
ଚନ୍ଦ୍ର ନକ୍ଷତ୍ର ରବିବାରେ ।
ଚତୁର୍ଦ୍ଧା ନାମ କରଣରେ ॥
ସମ୍ପୂର୍ଣ୍ଣ ହେଲା ଏ ଚରିତ ।
କହଇ ଲଛମନ ସୁତ ॥

କିନ୍ତୁ ମୁଁ ଦେଖିଥିବା ତାଳପତ୍ର ଓ ଛପା ପୋଥିରେ 'ଭୁଲ ପଞ୍ଚମୀ' ନଥାଇ 'ଭୁଲ ପଞ୍ଚମୀ' ଲେଖାଅଛି । କେତେକ ପୋଥିରେ 'ଶୁଦ୍ଧ ସକଳ ହରିବାସେ' ବଦଳରେ 'ଶୁଦ୍ଧ ଶୁକଳ' ପକ୍ଷରେ ବୋଲି ଲେଖାଅଛି ।

ଏଣୁ କେଦାରନାଥ ବାବୁ କେଉଁ ପୋଥିରୁ ଏହି ଉଦ୍ଧୃତି ଦେଇଛନ୍ତି ତାହା ଜଣା ପଡ଼ୁନାହିଁ । ପଣ୍ଡିତ ନୀଳକଣ୍ଠ ଦାସ ପ୍ରଥମ ଖଣ୍ଡର ରଚନାକାଳ ୧୭୬୫—୬୭ ବୋଲି ମତ ଦେଇଛନ୍ତି ।

ଯଦି ବୀରକେଶରୀ ଦେବଙ୍କ ଅଙ୍କ ଗଣନା ଖ୍ରୀ: ୧୭୩୬ ରୁ ଆରମ୍ଭ ହୋଇଥିଲା ବୋଲି ନିଶ୍ଚିତ ରୂପେ ଧରାଯିବ, ତାହାହେଲେ ଏହାଙ୍କ ୪୨ ଅଙ୍କର ସମ୍ପୂର୍ଣ୍ଣ ବେଳେ ଅର୍ଥାତ୍ ଖ୍ରୀ: ୧୭୭୦ ରେ

ପ୍ରଥମ ଖଣ୍ଡର ରଚନା ସମ୍ପୂର୍ଣ୍ଣ ହୋଇଥିଲା ବୋଲି ସ୍ଥିର କରାଯାଇପାରେ ।

(ଗ) **ରଚନାକାଳ** (୨ୟ ଖଣ୍ଡ)—

'ଦାର୍ଢ଼୍ୟତାଭକ୍ତି'ର ୨ୟ ଖଣ୍ଡର ରଚନା କେବେ ସମ୍ପୂର୍ଣ୍ଣ ହୋଇଥିଲା ତାହା ଆଲୋଚନା କରାଯାଉ । ୨ୟ ଖଣ୍ଡର ଦଶମ ଅଧ୍ୟାୟ ଶେଷରେ ରାମଦାସ ଲେଖିଛନ୍ତି :—

ଶ୍ରୀ ଦିବ୍ୟସିଂହ ଦେବଙ୍କର ।
ସମ୍ପୂର୍ଣ୍ଣ ତେଇଶି ଅଙ୍କର ॥
ଆଷାଢ଼ ଶୁକ୍ଳ ଦଶବାସେ ।
ଶ୍ରୀ ମୁକ୍ତେଶ୍ୱରଙ୍କର ପାଶେ ॥

× × ×

ପ୍ରଥମ ପ୍ରବନ୍ଧ ପଚାଶ ।
ଅଧ୍ୟାରେ ହୋଇଥିଲା ଶେଷ ॥
ତହୁଁ ବଞ୍ଚିତ ସମ୍ବତ୍ସର ।
ଜଗତୁ ସାଧୁମାନଙ୍କର ॥
କୃପାରୁ ପୁଣି ପଞ୍ଚବଂଶ ।
ଅଧ୍ୟାୟ ଦାର୍ଢ଼୍ୟଭକ୍ତି ରସ ॥
ଦୁଇ ପ୍ରବନ୍ଧ ମିଶିବାରେ ।
ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ॥

କେତେକ ତାଳପତ୍ର ତଥା ଛପା ବହିରେ ଏହି ଉଦ୍ଧୃତିରେ ଥିବା କେତେକ ପଦର ଏପଟ ସେପଟ କିମ୍ବା ସାମାନ୍ୟ ପରିବର୍ତ୍ତନ

ଦେଖାଯାଏ । କିନ୍ତୁ ଶ୍ରୀ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କ—ମୁଁ ଦେଖିଥିବା ସମସ୍ତ ପୋଥିରେ ରହିଅଛି । ଅଧିକାଂଶ ସମାଲୋଚକ ମଧ୍ୟ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କରେ ୨ୟ ଖଣ୍ଡର ରଚନା ସମ୍ପୂର୍ଣ୍ଣ ହୋଇଥିବା କଥା ଲେଖିଛନ୍ତି ।

ବର୍ତ୍ତମାନ ଶ୍ରୀ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କ କେଉଁ ସାଲରେ ପଡ଼ିଥିଲା ତାହା ଆଲୋଚନା କରିବା । ଏହାଙ୍କ ରାଜତ୍ୱ କାଳ ସମ୍ପର୍କରେ ମଧ୍ୟ ନାନା ମୁନିଙ୍କର ନାନା ମତ ! କିଏ କଣ ମତ ଦେଇଛନ୍ତି — ତାହା ନିମ୍ନରେ ପ୍ରଦତ୍ତ ହେଲା ।

୧୭୯୩—୧୭୯୫—ଉତ୍କଳର ମହତ୍ତ୍ଵ
୧୬୮୦ - ୧୭୯୮ — ଜଗବନ୍ଧୁ ସିଂହ
୧୭୮୧—୧୭୯୫ ଡ଼ଃ ଏନ୍. କେ. ସାହୁ ଇତ୍ୟାଦି
୧୭୭୩ - ୧୬୮୧ - ଶ୍ୟାମସୁନ୍ଦର ରାଜଗୁରୁ
୧୭୯୩—୧୭୯୫ ଚକ୍ରଧର ମହାପାତ୍ର
୧୭୯୩—୧୭୯୮ କେଦାରନାଥ ମହାପାତ୍ର

ଏହି ଦିବ୍ୟସିଂହ ଦେବ ହେଉଛନ୍ତି ଖୋରଧା ରାଜା ଗଜପତି ଦିବ୍ୟସିଂହ ଦେବ (୨ୟ) ।

ଯଦି ପ୍ରଥମ ଖଣ୍ଡ ୧୭୭୦ କିମ୍ବା କେଦାରନାଥଙ୍କ ମତ ଅନୁସାରେ ୧୭୬୮ ରେ ଲେଖାଗଲା ବୋଲି ଧରାଯିବ ତେବେ ଦ୍ୱିତୀୟ ଖଣ୍ଡର ରଚନା ପ୍ରଥମ ଖଣ୍ଡର ୩୨ ବର୍ଷ ପରେ ଅର୍ଥାତ୍ ୧୮୦୨ କିମ୍ବା ୧୮୦୦ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିବ ।

କିନ୍ତୁ ଉପର୍ଯ୍ୟୁକ୍ତ ଐତିହାସିକ ମତକୁ ଠିକ ଧରାଗଲେ, ୧୮୦୦

ସାଲ ବେଳକୁ ଦିବ୍ୟସିଂହ ଦେବ (୧ମ) ରାଜତ୍ୱ କରୁନାହାନ୍ତି । ଏହାଙ୍କ ୨୩ ଅଙ୍କ ( ବା ୧୯ ବର୍ଷ ) ରେ କବି ୨ୟ ଖଣ୍ଡର ରଚନା ଶେଷ କରିଥିବା ଲେଖିଛନ୍ତି । ଅଥଚ, ଦିବ୍ୟସିଂହ ଦେବ ୧୯ ବର୍ଷ ଯାଏ ରାଜତ୍ୱ କରି ନାହାନ୍ତି ।

ଅଙ୍କ ଗଣନା ଅନୁସାରେ ଦେଖିଲେ ଦିବ୍ୟସିଂହ ଦେବ ହୁଏତ ଏତେ ବର୍ଷ ରାଜତ୍ୱ କରି ନ ଥାନ୍ତି । କିନ୍ତୁ ପ୍ରକୃତରେ ତାଙ୍କର ଅଙ୍କ ଗଣନାର ବହୁ ପୂର୍ବରୁ ସେ ଶାସନ ଗାଦିରେ ବସିଥିବା କଥା କେତେକ ଐତିହାସିକ ମତ ଦିଅନ୍ତି । ନିଜେ କେଦାରନାଥ ବାବୁ ମଧ୍ୟ କହନ୍ତି ଯେ ବୀରକେଶରୀ ଦେବଙ୍କ ରାଜତ୍ୱର ଅଙ୍କ ଗଣନା ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ (୧୭୯୩) ଚାଲିଥିଲେ ମଧ୍ୟ ଦିବ୍ୟସିଂହ ଦେବ ପ୍ରକୃତରେ ୧୭୮୧ ଖ୍ରୀ: ରେ ଖରୁଧାର ରାଜପଦ ପ୍ରାପ୍ତ ହୋଇଥିଲେ । ଜଗବନ୍ଧୁ ସିଂହ ମଧ୍ୟ ଆଗରୁ ଲେଖିଛନ୍ତି ଯେ "ଏ ରାଜା ଭୋଗ କଲେ ୧୮ ବର୍ଷ ।" ଅର୍ଥାତ୍ ତାଙ୍କ ମତରେ ସେ ୧୭୮୦ରୁ ୧୭୯୮ ଯାଏଁ ରାଜତ୍ୱ କରିଥିଲେ । ବଶିଷ୍ଟ ଐତିହାସିକ ଡ଼: ନବୀନ କୁମାର ସାହୁ ଲେଖିଛନ୍ତି ଯେ ଦିବ୍ୟସିଂହ ଦେବ (୨ୟ), ୧୭୮୧ ରୁ ୧୭୯୫ ଯାଏଁ ରାଜତ୍ୱ କରୁଥିଲେ ।

ଏହି ସବୁ ଦୃଷ୍ଟିରୁ ବିଚାର କଲେ ଯଦି ପ୍ରଥମ ଖଣ୍ଡ ୧୭୭୦ ରେ ଶେଷ ହୋଇଥିଲା ତେବେ ତାର ୩୨ ବର୍ଷ ପରେ ଅର୍ଥାତ୍ ୧୮୦୨ ରେ ୨ୟ ଖଣ୍ଡ ରଚନା ଶେଷ ହୋଇଥିବ । ସେତେବେଳକୁ ଦିବ୍ୟସିଂହ ଦେବଙ୍କର ୨୩ ଅଙ୍କ ବା ଶାସନର ୧୯ ବର୍ଷ ହୋଇଥିଲେ, ଦିବ୍ୟସିଂହ ଦେବ ୧୭୮୩ ସାଲରେ ଖୋରଧାର ରାଜପଦ ପ୍ରାପ୍ତ ହୋଇଥିବେ ଓ ସେ

୧୮୦୨ ପର୍ଯ୍ୟନ୍ତ କମ୍ବା ଅଧିକ ବର୍ଷ ରାଜତ୍ୱ କରିଥିବେ । ଯଦି ପ୍ରଥମ ଖଣ୍ଡ ୧୭୬୮ ରେ ସମାପ୍ତ ହୋଇଥିଲା ବୁଝାଯିବ, ତେବେ ଦ୍ୱିତୀୟ ଖଣ୍ଡ ୧୮୦୦ ସାଲରେ ସମାପ୍ତ ହୋଇଥିବ । କିନ୍ତୁ ଦିବ୍ୟସିଂହ ଦେବଙ୍କ ଅଙ୍କ ଗଣନା ଯଦି ୧୭୭୮ରେ ଆରମ୍ଭ ହୋଇଥିବ, ଅର୍ଥାତ୍ ବୀରକେଶରୀ ଦେବଙ୍କ ମୃତ୍ୟୁ ପରେ ତେବେ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କର ଆଉ ପ୍ରଶ୍ନ ଉଠୁନାହିଁ । ତାହେଲେ ଭକ୍ତକବି ରାମଦାସ ଦିବ୍ୟସିଂହ ଦେବଙ୍କ ୨୩ ଅଂକ ବୋଲି ଯାହା ଲେଖିଛନ୍ତି ତାହା ଠିକ ନୁହେଁ ବୋଲି ଧରାଯିବ । ଅଥବା ରାମଦାସ, ଦିବ୍ୟସିଂହ ଦେବଙ୍କ ପ୍ରକୃତ ରାଜପଦ ପ୍ରାପ୍ତି ସମୟକୁ ଧରି, ନରେନ୍ଦ୍ର ଅଂକ ଗଣନା କରି, ଏହା ୨୩ ଅଂକ ବୋଲି ଲେଖିଥିବେ । ଦିବ୍ୟସିଂହ ଦେବ ହୁଏତ ୨୩ ଅଂକ କମ୍ବା ଅଧିକ କାଳ ଶାସନ କରିଥାଇ ପାରନ୍ତି, ଯେତହେତୁ ଆମର ଐତିହାସିକ ମାନେ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚି ପାରୁନାହାନ୍ତି !

'ଦାର୍ଢ୍ୟତାଭକ୍ତି'ର ୨ୟ ଖଣ୍ଡ ଆଲୋଚନା ପ୍ରସଙ୍ଗରେ ଶ୍ରୀ କେଦାରନାଥ ମହାପାତ୍ର 'ଦାର୍ଢ୍ୟତାଭକ୍ତି' ରୁ ନିମ୍ନଲିଖିତ ଉଦ୍ଧୃତି ଦେଇଛନ୍ତି—ଯାହାକି ମତେ ବିଚଳିତ କରି ପକାଇଛି ।

ଶ୍ରୀ ମୁକୁନ୍ଦଦେବ ରାଜାଂକର ।
ସଂପୂର୍ଣ୍ଣ ତିନ ଯେ ଅଂକର ॥
ମାଘର ମାସ ହରିବାସ ।
ଶ୍ରୀ ବାଲୁଂକେଶ୍ୱର ପାଶ ॥

× × ×

ପ୍ରଥମ ପ୍ରବନ୍ଧ ପଚିଶ ।
ଅଧ୍ୟାରେ ହୋଇଥିଲା ଶେଷ ॥

ତହିଁ ଉତ୍ତରୁ ସାଧୁଙ୍କର ।
କୃପାରୁ ବତିଶ ବତ୍ସର ॥
ତହିଁ ଉତ୍ତାରୁ ପଞ୍ଚବଂଶ ।
ଅଧ୍ୟାରେ ଦାର୍ଢ୍ୟଭକ୍ତି ରସ ॥
ଦୁଇ ପ୍ରବନ୍ଧ ମିଶିବାରେ ।
ସଂପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ॥

କେଦାରନାଥ ବାବୁ କେଉଁ ପ୍ରକାରେ ସଙ୍ଗ୍ରହ କରି ଅବା କେଉଁ ତାଳପତ୍ର ପୋଥିରୁ ଏହି ଉଦ୍ଧୃତ ଦେଇଛନ୍ତି ତାହା ଜଣାଯାଏ ନାହିଁ । ଏହି ଉଦ୍ଧୃତରୁ ଜଣାଯିବ ଯେ 'ଦାର୍ଢ୍ୟତା-ଭକ୍ତିର' ର ୨ୟ ଖଣ୍ଡ ମୁକୁନ୍ଦଦେବ ରାଜାଙ୍କ ୫ମ ଅଙ୍କରେ ସମାପ୍ତ ହୋଇଥିଲା । ଦିବ୍ୟସିଂହ ଦେବଙ୍କ ପରେ ମୁକୁନ୍ଦଦେବ (୨ୟ), ରାଜତ୍ୱ କରିଥିବା ଜଣାଯାଏ । ମହତାବଙ୍କ ଓଡ଼ିଶା ଇତିହାସରୁ ଜଣାଯାଏ ଯେ ଏହି ମୁକୁନ୍ଦଦେବ ଖ୍ରୀ: ୧୭୯୫ ରୁ ୧୮୧୭ ଯାଏଁ ରାଜୁତି କରିଥିଲେ । ଯେ ଯାହା ହେଉ— ମୁକୁନ୍ଦଦେବଙ୍କ ଅମଳରେ ଯେ ୨ୟ ଖଣ୍ଡ ଲେଖା ହୋଇନାହିଁ, ଏହା ବିଶ୍ୱାସ କରିବାର ବହୁତ କାରଣ ଅଛି । ମୁଁ ଦେଖିଥିବା ତାଳପତ୍ର ଓ ଛପା ଦାର୍ଢ୍ୟତାଭକ୍ତି ପୁସ୍ତକ ମାନଙ୍କରେ ଦିବ୍ୟସିଂହ ଦେବଙ୍କ ୨୩ ଅଙ୍କ ଲେଖାଅଛି । କେଉଁଠାରେ ମଧ୍ୟ "ଶ୍ରୀ ବାଲୁଙ୍କେଶ୍ୱର ପାଶ" ଉଲ୍ଲେଖ ନାହିଁ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ସମାଲୋଚକ ମାନେ ମଧ୍ୟ 'ଦାର୍ଢ୍ୟତାଭକ୍ତି' ଆଲୋଚନା ପ୍ରସଙ୍ଗରେ ଯେଉଁ ଉଦ୍ଧୃତମାନ ଦେଇଛନ୍ତି କିନ୍ତୁ ସେଥିରୁ ମଧ୍ୟ ଜଣାଯାଏ ଯେ ସେମାନେ ଯେଉଁ 'ଦାର୍ଢ୍ୟତା ଭକ୍ତି' ଦେଖିଛନ୍ତି ସେଥିରେ ଦିବ୍ୟସିଂହ ଦେବଙ୍କ

୨୩ ଅଂକ ରହିଛି । ଢ଼ୁରି ଗ୍ରାମରେ ଶ୍ରୀ ମୁକ୍ତେଶ୍ୱର ମନ୍ଦିର ଅଦ୍ୟାପି ବିଦ୍ୟମାନ ଅଛି । ଏହା 'ବାଲୁଂକେଶ୍ୱର, ନୁହେଁ । ଏହା ବ୍ୟତୀତ ଶ୍ରୀ କେଦାରନାଥ ମହାପାତ୍ର ଦେଇଥିବା ଉଦ୍ଧୃତ (quotation) ରେ ଥିବା "ଶ୍ରୀ ମୁକୁନ୍ଦଦେବ ରାଜାଂକର" ଓ "ଶ୍ରୀ ବାଲୁଙ୍କେଶ୍ୱର ପାଶ" ନବାକ୍ଷରୀ ହେଉ ନାହିଁ । ଏହା ଯଥାକ୍ରମେ ୧୦ ଓ ୮ ଅକ୍ଷରୀ ହେଉଅଛି । 'ଦାର୍ଢ୍ୟତାଭକ୍ତି' କିନ୍ତୁ ନବାକ୍ଷରୀ ବୃତ୍ତରେ ଲିଖିତ । ଏଣୁ ଏହା ସେ କବିଙ୍କ ଦ୍ୱାରା ଲିଖିତ ନୁହେଁ । ଏଣୁ ଏହା ଭୁଲ ନକଲ କରି ଯାଇଥିବା କୌଣସି 'ଦାର୍ଢ୍ୟତା ଭକ୍ତି' ପୁସ୍ତକରୁ ଆନୀତ ।

ମୋର ସନ୍ଦେହ ହେବାରୁ ମୁଁ ଏ ସମ୍ପର୍କରେ କେଦାରନାଥ ବାବୁଙ୍କ ପାଖକୁ ପତ୍ରଲେଖି ପଚାରିଥିଲି । ମାତ୍ର ଉତ୍ତର ପାଇନାହିଁ । ଏ ବିଷୟରେ ସଠିକ ତଥ୍ୟ ବାହାର କରିବାକୁ ମୁଁ ଓଡ଼ିଆ ସାହିତ୍ୟର ଅଧ୍ୟାପକ ତଥା ଗବେଷକ ମାନଙ୍କୁ ନିବେଦନ କରୁଛି । କେଦାରନାଥ ବାବୁ ପ୍ରଥମ ଓ ଦ୍ୱିତୀୟ ଖଣ୍ଡର ରଚନାକାଳ ସମ୍ପର୍କରେ ଯାହା କହିଛନ୍ତି—ଡଃ ସତ୍ୟନାରାୟଣ ରାଜଗୁରୁ ମଧ୍ୟ ସେହିକଥା 'ଶୁଭେଚ୍ଛା ବାଣୀ' ରେ ଲେଖିଛନ୍ତି ।

## (ଘ) ଅଧ୍ୟାୟ ସଂଖ୍ୟା

ଭକ୍ତକବି ରାମଦାସ 'ଦାର୍ଢ୍ୟତାଭକ୍ତି ରସାମୃତ' କୁ ଦୁଇଟି ଖଣ୍ଡରେ ସମାପ୍ତ କରିଥିଲେ । ପ୍ରତ୍ୟେକ ଖଣ୍ଡରେ ୨୫ଟି ଅଧ୍ୟାୟ ଲେଖିଥିଲେ । ଏହାର ପ୍ରମାଣ, ୫୦ ଅଧ୍ୟାୟରେ ବର୍ଣ୍ଣିତ ଅଛି :—

ପ୍ରଥମ ପ୍ରବନ୍ଧ ପଚଶ ।
ଅଧ୍ୟାରେ ହୋଇଥିଲା ଶେଷ ॥
ତହୁଁ ବତ୍ତଶ ସମ୍ବତ୍ସର ।
ଉତ୍ତାରୁ ସାଧୁମାନଙ୍କର ॥
କୃପାରୁ ପୁଣି ପଞ୍ଚବିଂଶ ।
ଅଧ୍ୟାୟ ଦାର୍ଢ଼୍ୟଭକ୍ତି ରସ ॥
ଦୁଇ ପ୍ରବନ୍ଧ ମିଶିବାରେ ।
ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ॥

( 'ଦାର୍ଢ଼୍ୟତା ଭକ୍ତି' ( ଦ୍ୱିତୀୟ ଭାଗ )— ପ୍ରକାଶକ ଧର୍ମଗ୍ରନ୍ଥ ଷ୍ଟୋର, କଟକ । )

ମୁଁ ଦେଖିଥିବା ତାଳପତ୍ର ପୋଥି ମାନଙ୍କରେ ୫୦ ଅଧ୍ୟାୟ ଅଛି । କିନ୍ତୁ ଅଧୁନା ମିଳୁଥିବା ଛପା ବହି ମାନଙ୍କରେ ୫୫ ଅଧ୍ୟାୟ ରହିଛି । ଗୋଟିଏ ଅତି ପୁରୁଣା 'ଦାର୍ଢ଼୍ୟତାଭକ୍ତି' ଛପାବହି ମୋର ଦୃଷ୍ଟିରେ ପଡ଼ିଲା । ଏଥିରୁ ଛପା ସମୟ ଜାଣି ହେଲାନାହିଁ । ଏହି ବହିରେ ରାମଦାସ, ପ୍ରଥମ ଖଣ୍ଡ (୨୫ ଅଧ୍ୟାୟ) ଓ ଦ୍ୱିତୀୟ ଖଣ୍ଡ (୩୦ ଅଧ୍ୟାୟ) ଲେଖିଥିଲେ ପରି, ୫୫ ଅଧ୍ୟାୟ ଶେଷରେ ଏହିପରି ବର୍ଣ୍ଣିତ ଅଛି :—

ପ୍ରଥମ ପ୍ରବନ୍ଧ ପଚଶ ।
ଅଧ୍ୟାରେ ହୋଇଥିଲା ଶେଷ ॥
ତହୁଁ ବତ୍ତିଶ ସମ୍ବତ୍ସର ।
ଉତ୍ତାରୁ ସାଧୁମାନଙ୍କର ॥

କୃପାରୁ ପୂର୍ଣ୍ଣ ଅଧ୍ୟର୍ଦ୍ଧଂଶ ।
ରଚିଲ ଦାର୍ଢ୍ୟଭକ୍ତି ରସ ॥
ଦୁଇ ପ୍ରକାର ହୋଇ ମେଳ ।
ପଞ୍ଚାବନରେ ହେଲା ମୂଳ ॥
ଶ୍ରୀ ଦିବ୍ୟସିଂହ ଦେବଙ୍କର ।
ସମ୍ପୂର୍ଣ୍ଣ ତେଇଶି ଅଙ୍କର ॥

ଶ୍ରୀ ଅଭିମନ୍ୟୁ ଚନ୍ଦ୍ର ଦାନଙ୍କ ଦ୍ୱାରା ଅରୁଣୋଦୟ ପ୍ରେସ କଟକ ( ବିଂଶ ସଂସ୍କରଣ ) ରେ ପ୍ରକାଶିତ 'ଦାର୍ଢ୍ୟତା ଭକ୍ତି' ବହିରେ ପଚାଶ ଓ ଏକାବନ ଅଧ୍ୟାୟ ରାମଦାସଙ୍କ ନାମରେ ଭଣିତ ଓ ତେପନ, ଚଉବନ ଏବଂ ପଞ୍ଚାବନ ଅଧ୍ୟାୟ ଏବ୍ରୁ ପୂର୍ଣ୍ଣ ନନ୍ଦ ଦାସଙ୍କ ନାମରେ ଭଣିତ ଅଛି । ପୂର୍ଣ୍ଣ ନନ୍ଦ ଦାସ ଲେଖିଥିବା ଏହି ୩ଟି ଅଧ୍ୟାୟରେ ଥିବା ଅକ୍ଷର କମ୍ବା ଧାଡ଼ି, ମୁଁ ଦେଖିଥିବା ଅନ୍ୟାନ୍ୟ ଛପା ପୋଥି ସହ ମିଳୁନାହିଁ । କିନ୍ତୁ ଅଧ୍ୟାୟର ନାମ ଓ ବିଷୟବସ୍ତୁ ସମାନ ଅଛି । ଅଉ କେତେକ ଛପା ବହିରେ ୫୧ ଠାରୁ ୫୫ ଅଧ୍ୟାୟ ମଧ୍ୟ ରାମଦାସ ଲେଖିଥିବା ପରି ଅର୍ଥାତ୍ ତାଙ୍କ ନାମରେ ଭଣିତ ଅଛି'।

କିନ୍ତୁ ଏହି ପାଞ୍ଚ ଅଧ୍ୟାୟ ରାମଦାସ ନିଶ୍ଚୟ ଲେଖିନାହାନ୍ତି ଏହାର ଯଥେଷ୍ଟ ପ୍ରମାଣ ଅଛି । ପ୍ରାଚୀନ ତାଳପତ୍ର ପୋଥିରେ ପଚାଶ ଅଧ୍ୟାୟ ଯାଏଁ ରହିଛି । ଆଉ ପାଞ୍ଚଟି ଅଧ୍ୟାୟ ଅନ୍ୟାନ୍ୟ ପରବର୍ତ୍ତୀ ଲେଖକମାନେ ଲେଖି ରାମଦାସଙ୍କ ନାମରେ ଭଣିତକରି ଯୋଡି ଦେଇଛନ୍ତି । ପୂର୍ଣ୍ଣାନନ୍ଦ ଦାସ ନାମକ କେହି ଜଣେ ନିଜ ନାମରେ ଭଣିତକରି ୩ଟି ଅଧ୍ୟାୟ ମଧ୍ୟ ପୂର୍ବୋକ୍ତ ବହିରେ

ଯୋଡ ଦେଇଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ମଧ୍ୟ ଲେଖିଛନ୍ତି ଯେ ପାଞ୍ଚଟି ଅଧ୍ୟାୟ ପରେ ଅନ୍ୟମାନେ ଲେଖି ରାମଦାସଙ୍କ ନାମରେ ଭଣିତା କରି ଯୋଡ ଦେଇଛନ୍ତି । ୫୩ ଅଧ୍ୟାୟରେ ଥିବା 'ବଡ଼ ବିପ୍ର ଓ ଶ୍ରେଷ୍ଠ ବିପ୍ର ସମ୍ବାଦ' ( ସାକ୍ଷୀ ଗୋପାଳ ) ଖ୍ରୀ: ୧୮୭୧ ପରେ ଲେଖା ହୋଇଥିବା 'ବୋଲି' ପଣ୍ଡିତ ନୀଳକଣ୍ଠ ମତ ଦେଇଛନ୍ତି । ପୂର୍ବକାଳରେ ଏହିପରି ଅନ୍ୟ ନାମରେ ଭଣିତାକରି କେତେ ଅଧ୍ୟାୟ ଲେଖାଯାଉଥିଲା—ଜଣାଯାଏ । ଜଗନ୍ନାଥ ଦାସ ମଧ୍ୟ କୁଆଡେ 'ଭାଗବତ' ଏକାଦଶ ସ୍କନ୍ଧ ଯାଏଁ କେବଳ ଲେଖିଥିଲେ । ଦ୍ୱାଦଶ ଓ ତ୍ରୟୋଦଶ ସ୍କନ୍ଧ, ମହାଦେବ ଦାସଙ୍କ ଦ୍ୱାରା ପ୍ରକୃତରେ ରଚିତ ବୋଲି ଅଧ୍ୟାପକ କୃଷ୍ଣଚନ୍ଦ୍ର ଦାସଙ୍କ ଏକ ପ୍ରବନ୍ଧରୁ ଜଣାଯାଏ । ପ୍ରଥମ ଖଣ୍ଡର ବଉନ୍ନ ଅଧ୍ୟାୟରେ ବର୍ଣ୍ଣିତ ଭକ୍ତମାନେ ହେଲେ ବଳିରାଜା, ହରିଶ୍ଚନ୍ଦ୍ର, [illegible], କର୍ଣ୍ଣରାଜା, ଧନବନ୍ଧୁ ଦାସ, ଦାମୋଦର ଦାସ, ଷଣ୍ମୁର ଦାସ, ରାମଦାସ, ରଘୁ ଅରକ୍ଷିତ, ନୀଳାମ୍ବର ଦାସ, ଚନ୍ଦ୍ର ଟବଳଦଗ, ଗଙ୍ଗାଧର ଦାସ; ବନ୍ଧୁ ମହାନ୍ତି, ବଳରାମ ଦାସ, ଜଗନ୍ନାଥ ଦାସ, ମାଧବାରୁନ୍ଧ, ଝୋଲିଆ କବୀର, ମଣି ଦାସ, କୃଷ୍ଣ ଦାସ, ତିଳକ ମହାପର୍ଣ, ଅଙ୍ଗନା-ମାଧବା, କୀର୍ତ୍ତିଚନ୍ଦ୍ର, ଗଣପତି ଭଟ୍ଟ, ଅନନ୍ତା ଶବର, ମେଳଛ ।

ଦ୍ୱିତୀୟ ଖଣ୍ଡରେ ନିମ୍ନ ଲିଖିତ ଭକ୍ତମାନଙ୍କ ସମ୍ବାଦ ରହିଛି ।

କୁଳଶିଖର ରାଜା, ନୀଳବେଗ ଓ ସାଲବେଗ, ଦାସିଆ ବାଉରୀ, ତୁଳସୀ ଦାସ, ସିପୁଟି, ନାରାୟଣ ଦାସ, ଗୌରଚନ୍ଦ୍ର, ଗୋବିନ୍ଦ ଦାସ, ଦୀନବନ୍ଧୁ ଓଝା, ଗୀତା ପଣ୍ଡା, ହରିଚନ୍ଦନ ରାଜା,

ମଙ୍ଗଳି ଗଉଡ଼, ବାଳକ ରାମଦାସ, କୃପାସିନ୍ଧୁ, ନନ୍ଦ ମହାନ୍ତି, ମୋଟ ରାମଦାସ, ରଞ୍ଜନ ନନ୍ଦ, ରଘୁଦାସ, ପିଆ ଦାସ, କୃଷ୍ଣ ପ୍ରିୟା, ମୀରାବାଈ, ଜ୍ଞାନ ନନ୍ଦ, ଆନନ୍ଦ ବେହେରା, ଓ ଅଜାମିଳ ପଣ୍ଡା ।

ପ୍ରଥମ ଅଧ୍ୟାୟରେ ଆଉ ଯେଉଁ ପାଞ୍ଚଟି ଅଧ୍ୟାୟ ଅନ୍ୟମାନେ ଲେଖି ଯୋଡ଼ି ଦେଇଥିବା ଜଣାଯାଏ । ସେ ସବୁ ଅଧ୍ୟାୟମାନଙ୍କରେ ନିମ୍ନଲିଖିତ ଭକ୍ତମାନଙ୍କ ସମ୍ବାଦ ରହିଛି ।

ଗଙ୍ଗାବ ଦାସ, ଚନ୍ଦ୍ରଧ୍ୱଜ, ବନ୍ତ ବିପ୍ର ଓ ଶ୍ରେଷ୍ଠ ବିପ୍ର, ବିଲ୍ୱ ମଙ୍ଗଳ, ଜୟଦେବ ।

କେତେକ 'ଦାର୍ଢ୍ୟତା ଭକ୍ତି' ବହିରେ ଭକ୍ତମାନଙ୍କ ନାମରେ ପ୍ରଭେଦ ଦେଖାଯାଏ । ଏକ ତାଳପତ୍ର ବହିରେ କୃଷ୍ଣ ପ୍ରିୟା (୪୬ ଅଧ୍ୟାୟ) ଲେଖା ନହୋଇ କୃଷ୍ଣ ପ୍ରିୟା ଲେଖାଅଛି । କେତେ ଛପା ବହିରେ ଏକ ବନ୍ଧ ଅଧ୍ୟାୟର ଶୀର୍ଷକ 'ଗଙ୍ଗାବ ଦାସ' ଲେଖା ଅଛି ଓ ଅନ୍ୟ କେତେ ବହିରେ 'ରଘୁବର ପାଣ୍ଡେ' ଲେଖା ଅଛି ।

'ଦାର୍ଢ୍ୟତା ଭକ୍ତି'ରେ ବର୍ଣ୍ଣିତ ଭକ୍ତମାନଙ୍କ ମଧ୍ୟରୁ ବଳୀରାଜା, କର୍ଣ୍ଣ, ହରିଶ୍ଚନ୍ଦ୍ର ତଥା ମୀରାବାଈଙ୍କ କଥା ଜଣାଶୁଣା । ଏ ସବୁର କଥାବସ୍ତୁ କବି ରାମଦାସ, ପୁରାଣ ଓ ଇତିହାସରୁ ସଂଗ୍ରହ କରିଥିବେ । କେବଳ ରାଜବଂଶଜ ଭକ୍ତମାନଙ୍କ କଥା ନ ଲେଖି, ସେ ବ୍ରାହ୍ମଣ, କରଣ, ମାଳୀ, ଧୀବର, ଗଉଡ଼, ଶବର ଓ ପଠାଣ ଇତ୍ୟାଦି ବିଭିନ୍ନ ଜାତି ଓ ଧର୍ମର ଭକ୍ତମାନଙ୍କ କଥା ଲେଖିଛନ୍ତି । ଏହି ଭକ୍ତମାନେ କେବଳ ଓଡ଼ିଶାର ଅଧିବାସୀ

ନୁହନ୍ତି, ଏମାନଙ୍କ ମଧ୍ୟରୁ ଅନେକ ସୁଦୂର ଲାହୋର, ଅବନ୍ତୀ, ଦିଲ୍ଲୀ, 'ଦକ୍ଷିଣାଞ୍ଚଳର ଅଲକା ପଲ୍ଲୀ ( ଆନକାପଲ୍ଲୀ ) ପ୍ରଭୃତି ଅଞ୍ଚଳର ଅଧିବାସୀ । ଡ଼କ୍ଟର ମାନସିଂହ ଯଥାର୍ଥରେ ଲେଖିଛନ୍ତି — ଦାସଙ୍କ ଜିଜ୍ଞାସା ଓ ଗବେଷଣା ଯୋଗୁଁ ଆମେ ଭାରତର ଅନ୍ୟ ପ୍ରାନ୍ତର ମୀରାବାଈ ଓ କବୀରଙ୍କ ପରି ମହାତ୍ମାମାନଙ୍କ ସହିତ ଓଡିଶାର ଦାସିଆ ବାଉରୀ ଓ ମଙ୍ଗଳା ଗଉଡ଼ୁଙ୍କୁ ମଧ୍ୟ ଜାଣିପାରୁଛୁ । ସେହିଠାରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ବଡ଼ ରାମଦାସଙ୍କ ମହତ୍ତ୍ଵଦାନ । ଦାସେ ବ୍ରାହ୍ମଣ ହୋଇଲେହେଁ, ଅକାତରରେ ଶୂଦ୍ରଶ୍ରେଣୀର ସାଧୁଜନମାନଙ୍କୁ ଯେ ତାଙ୍କ ଚରିତ୍ରରେ ସମ୍ମାନଜନକ ସ୍ଥାନ ଦେଇ ଯାଇଛନ୍ତି, ଏହା ତାଙ୍କର ଉଦାର ଚେତନା, ପ୍ରକୃତ ବୈଷ୍ଣବ ଭାବ ଓ ଶ୍ରେଣୀ ଚେତନାହୀନ ସମାଜର ପରିକଳ୍ପନା ସୂଚିତ କରେ ।

ଡ଼କ୍ଟର ମାନସିଂହ, 'ହରିଚନ୍ଦନ ରାଜା' ଚରିତ ଏବଂ ଆଙ୍କନା-ମାଧନା ଚରିତଚିତ୍ରଣରେ ରାମଦାସଙ୍କ ଲେଖନ ଶୈଳୀର ଉଚ୍ଚ ପ୍ରଶଂସା କରିଛନ୍ତି । ସେ ଲେଖିଛନ୍ତି— "ଆଜ ଦେଖାରେ ଦୁଇଭାଇ ଆଙ୍କନା ଓ ମାଧନାର ଯେଉଁ ଚରିତ ସେ ବର୍ଣ୍ଣନା କରିଛନ୍ତି, ତାହା ନିଷ୍ଠାପୂର୍ଣ ଜିଜ୍ଞାସା, ଅନ୍ୱେଷଣ ଓ ଗବେଷଣାର ସୂଚନା କରେ ।" ଅନ୍ୟତ୍ର ଡ଼: ମାନସିଂହ ଲେଖିଛନ୍ତି – "ରାମଦାସଙ୍କ ଦାର୍ଢ୍ୟତା ପୁଣି ଉତ୍କଳର ଗତଯୁଗର ସାମାଜିକ ଚିତ୍ରଶାଳା ଭାବରେ ଅନନ୍ୟ ଓ ଅନୁପମ । × × ଦାସେ ବାଣପୁରର ଏକ ହରିଚନ୍ଦନ ରାଜାର ଯେଉଁ ଚିତ୍ର ଦେଇ ଯାଇଛନ୍ତି, ତାହା ପ୍ରତ୍ୟେକ ଶାସକର ପଠନୀୟ । × × କ୍ଷମତା ନିରାସକ୍ତ, କେବଳ ଜନୋପକାର ଦୃଷ୍ଟି ଏପରି ଜଣେ ଶାସକର ଚିତ୍ର ସମଗ୍ର ଓଡ଼ିଆ ସାହିତ୍ୟରେ ଅନ୍ୟତ୍ର କାହିଁ ଅଛି କି ?"

୧୯ ଅଧ୍ୟାୟରେ ବର୍ଣ୍ଣିତ 'କୃଷ୍ଣଦାସ' ସମ୍ବାଦ – ଏହିପରି ଏକ ସୁନ୍ଦର ଅଧ୍ୟାୟ । ଏହି କୃଷ୍ଣଦାସ ହୁଏତ କବି ଦୀନକୃଷ୍ଣ ଦାସ ( 'ରସକଲ୍ଲୋଳ' ର ରଚୟିତା ) ଏଥିରେ ଜଣେ କବି ବା ଶିଳ୍ପୀର ନିଜର ସୃଷ୍ଟି ପ୍ରତି ସଚେତନତା ତଥା ଆତ୍ମସମ୍ମାନ ବୋଧ ଅତି ସୁନ୍ଦର ଭାବେ ବର୍ଣ୍ଣିତ । ଯେଉଁମାନେ କହନ୍ତି ଯେ 'ଦାର୍ଢ୍ୟତାଭକ୍ତି' ରେ ବର୍ଣ୍ଣନାଗୁଡ଼ିକ ନାହିଁ – ସେମାନେ ଭୁଲ୍ କରୁଛନ୍ତି ।

## (ଙ) ସପ୍ତମ ଅଧ୍ୟାୟର ରାମଦାସ -

'ଦାର୍ଢ୍ୟତାଭକ୍ତି' ରେ ତିନୋଟି ରାମଦାସଙ୍କ ବିଷୟରେ ବର୍ଣ୍ଣନା ଅଛି । ଯଥା:— ୧) ରାମଦାସ (୨) ବାଳକ ରାମଦାସ (୩) ମୋଟା ରାମଦାସ । ସପ୍ତମ ଅଧ୍ୟାୟରେ ଯେଉଁ ରାମଦାସ ନାମକ ଭକ୍ତଂକ ବିଷୟ ଅଛି, ତାହା ଯେ ସ୍ୱୟଂ ଲେଖକ ରାମଦାସ ବୋଲି ଜଗବନ୍ଧୁ ସିଂହ ଓ ଶ୍ୟାମସୁନ୍ଦର ରାଜଗୁରୁ ପ୍ରମୁଖ ମତବ୍ୟକ୍ତ କରିଛନ୍ତି । ଉଭୟଙ୍କ ଜୀବନୀରେ ସାଦୃଶ୍ୟ ଅଛି । ସପ୍ତମ ଅଧ୍ୟାୟରେ ବର୍ଣ୍ଣିତ ରାମଦାସ ମଧ୍ୟ 'ଦକ୍ଷିଣ ଦେଶେ ପୁଣ୍ୟ କ୍ଷେତ୍ର' ବା ପୁଣ୍ୟ ଗ୍ରାମେ ବାସ କରୁଥିଲେ । ସେ ଗୃହୀ ବୈଷ୍ଣବ ଥିଲେ ଓ ଗ୍ରାମରେ ମଠ କରି ରହିଥିଲେ । ତାଙ୍କ କୁଟୁମ୍ବରେ ଥିଲେ ତିନିଜଣ - ସେ ତାଙ୍କ ସ୍ତ୍ରୀ ଓ ଗୋଟିଏ ପୁଅ । ସେ ଅତ୍ୟନ୍ତ ଚତୁର, ପଣ୍ଡିତ ଓ ଦାମ୍ଭୀ ଥିଲେ ଏବଂ ପ୍ରଭୁ ଲଛମନଙ୍କ ଭକ୍ତ ଥିଲେ । ଭକ୍ତ ରାମଦାସ ( ଲେଖକ ) ମଧ୍ୟ ଗୃହୀ ବୈଷ୍ଣବ ଥିଲେ । ଓଡ଼ିଶାର ଦକ୍ଷିଣ ଦେଶ ଅର୍ଥାତ୍ ଗଞ୍ଜାମର ଡ଼ୁରା ଗ୍ରାମରେ ଏକ ମଠରେ ରହୁଥିଲେ । ସେ ମଧ୍ୟ ଜ୍ଞାନୀ, ପଣ୍ଡିତ ଥିଲେ । ତାଙ୍କ

ପଞ୍ଚବାରରେ—ସେ, ସ୍ତ୍ରୀ ଓ ଗୋଟିଏ ପୁଅ ଥିଲେ। ଏ ସବୁ ଦୃଷ୍ଟିରୁ ବିଚାର କଲେ ଭକ୍ତକବି ରାମଦାସ ଯେ ତାଙ୍କ ନିଜ କଥା ସପ୍ତମ ଅଧ୍ୟାୟରେ ଲେଖିଛନ୍ତି ବୋଲି ଅନୁମାନ କରାଯାଏ।

କିନ୍ତୁ ଆଉ କେତେକ ବିଷୟ ବିଚାର କଲେ, ଏହାର ସତ୍ୟତା ବିଷୟରେ ସନ୍ଦେହ ଜାତହୁଏ। ସପ୍ତମ ଅଧ୍ୟାୟରେ ଉଲ୍ଲେଖ ଅଛି।

ଶ୍ରୀ ଲଛମନଙ୍କ ସଦର।
ଭକତ ମୁକତି ଦୁଆର॥
ଏମନ୍ତେ ପୁଣ୍ୟଗ୍ରାମେ ବାସ।
ନାମ ତାହାର ରାମଦାସ॥

ଏହି ଲଛମନ କେଉଁ ଦେବତା- ତାହା ଜଣାଯାଏ ନାହିଁ। ବର୍ତ୍ତମାନ ଉକ୍ତ ଗ୍ରାମରେ ଲଛମନ ବୋଲି ଠାକୁର କେହି ନାହାନ୍ତି। ତା ଛଡା ଉକ୍ତ ଗ୍ରାମ ଯେପରି ପୁଣ୍ୟ ବା ତୀର୍ଥ କ୍ଷେତ୍ର ନୁହେଁ।

ଅଣଚାଳିଶ ଅଧ୍ୟାୟରେ ବାଳକରାମ ଦାସ ହରିଚର ଅନେକ ତୀର୍ଥକ୍ଷେତ୍ର ଭ୍ରମଣ କରି ଥିବା କଥା ବର୍ଣ୍ଣନା କରାଯାଇଛି। ଏହି ତୀର୍ଥକ୍ଷେତ୍ରମାନ ହେଲା—ଗୋପ, ମଥୁରା, ବୃନ୍ଦାବନ, କାଳିନ୍ଦୀ, ଗିରି ଗୋବର୍ଦ୍ଧନ, ଅଯୋଧ୍ୟା, ଚିତ୍ରକୁଟ, କାଶୀ, କାଞ୍ଚନାବେଣୀ, ବାରଣାସୀ ଦ୍ୱାରିକାଧାମ, ଶ୍ରୀ ରାମେଶ୍ୱର, ଶ୍ରୀ ଲଛମନ କ୍ଷେତ୍ର, ପଞ୍ଚବଟୀ ଗୋଦାବରୀ, ବଦ୍ରୀନାଥ ସୀମାଞ୍ଚଳ ଇତ୍ୟାଦି। ଏହି ସବୁ କ୍ଷେତ୍ର ଭିତରେ 'ଶ୍ରୀ ଲଛମନ କ୍ଷେତ୍ରବର', ଭୂପତି ବୈକୁଣ୍ଠ

ହିଁ ଣିପତାରେ ଯାହା ଲେଖିଛନ୍ତି ତାହା କଦାପି ବର୍ତ୍ତମାନର ଡୁମ୍ରୀଗ୍ରାମ ହୋଇ ନଥିବ । ବେ ଧରୁଏ ପଞ୍ଚବଟୀ ଗୋଦାବରୀ ଜନ୍ମସ୍ଥାନ ତାର ନିକଟବର୍ତ୍ତୀ କୌଣସି ଅଞ୍ଚଳକୁ ସେ ସମୟରେ ଶ୍ରୀ ଲଛମନ କ୍ଷେତ୍ର କୁହା ଯାଉଥିଲା । ଭକ୍ତକବି ରାମଦାସ ଭାରତର ଅନେକ ତୀର୍ଥକ୍ଷେତ୍ର ପରିଭ୍ରମଣ କରିଥିବା ଅନୁମାନ କରାଯାଏ । ସେ ହୁଏତ ଉକ୍ତ କ୍ଷେତ୍ର ଯାଇଥିଲେ ଓ ପ୍ରଭୁ ଲଛମନଙ୍କଠାରେ ଭକ୍ତି ପାଳୁଥିଲେ ।

ଏହାଛଡ଼ା, ଲଛମନ ଏକ ଓଡ଼ିଆ ପଦ ନୁହେଁ । ହିନ୍ଦୀରେ ଲକ୍ଷ୍ମଣଙ୍କୁ ଲଛମନ ବୋଲି ମଧ୍ୟ ଉଚ୍ଚାରଣ କରାଯାଏ । ଏଣୁ ଓଡ଼ିଆଭାଷୀ ଡୁମ୍ରୀଗ୍ରାମ କଦାପି ଲଛମନ ପୁର ହୋଇନଥିବ ।

ଏହି ସପ୍ତମ ଅଧ୍ୟାୟରେ ବର୍ଣ୍ଣିତ କାହାଣୀର ଅନୁରୂପ ଏକ କାହାଣୀ ବା କିମ୍ବଦନ୍ତୀ, ଅର୍ଥାତ୍ ଭକ୍ତ କରିଥିବା ବନ୍ଧକ, ଭଗବାନ ଛଦ୍ମବେଶରେ ମହାଜନ ପାଖେ ଭେଟ କରିବା—ଆନ୍ଧ୍ରପ୍ରଦେଶରେ ଭଦ୍ରାଚଲମ୍ ଅଞ୍ଚଳରେ ପ୍ରଚଳିତ ଥିବା କଥା ମତେ ଶ୍ରୀ ସୀତାରାମ ନନ୍ଦ ନ୍ତ କହୁଥିଲେ । ଏଥିରୁ ଅନୁମାନ କରିବା କଥା ଯେ ସପ୍ତମ ଅଧ୍ୟାୟରେ ଯେଉଁ ରାମଦାସଙ୍କ କଥା ବର୍ଣ୍ଣିତ ଅଛି ଏହା ସ୍ୱୟଂ ଲେଖକ ରାମଦାସଙ୍କ କଥା ନୁହେଁ ।

## (ଚ) ରାମଦାସଙ୍କ ଉପରେ ଜଗନ୍ନାଥ ଦାସଙ୍କ ଭାଗବତର ପ୍ରଭାବ :

ରାମଦାସ, ଓଡ଼ିଆ ଭାଗବତର ରଚୟିତା ଜଗନ୍ନାଥ ଦାସଙ୍କ ପରବର୍ତ୍ତୀ କବି । ରାମଦାସ ଏହି ଭାଗବତ ଦ୍ୱାରା ଯେ ପ୍ରଭାବିତ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । 'ଦାର୍ଢ୍ୟତାଭକ୍ତି' ରେ

ମଧ୍ୟ ଜଗନ୍ନାଥ ଦାସ ଉପରେ ଏକ ଅଧ୍ୟାୟ ରହିଛି । ଜଗନ୍ନାଥ ଦାସଙ୍କ ପରି ସେ ନବାକ୍ଷରୀ ବା 'ଭାଗବତ' ବୃତ୍ତରେ 'ଦାର୍ଢ୍ୟତାଭକ୍ତି ରସାମୃତ' ଲେଖିଛନ୍ତି । ଏହି ଓଡ଼ିଆ ନବାକ୍ଷରୀ ଛନ୍ଦର ଅନ୍ୟ ନାମ ଗୁଜ୍ଜରୀ । ବୋଧହୁଏ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଦାସ ପ୍ରଥମେ ଏହି ଗୁଜ୍ଜରୀ ଛନ୍ଦରେ ଲେଖିଥିଲେ । ସେ ଏହି ଗୁଜ୍ଜରୀ ଛନ୍ଦ ପ୍ରାକୃତରୁ ଆଣିଥିବା ପ୍ରମାଣ ମିଳେ । ଜଗନ୍ନାଥ ଦାସ ଲେଖିଛନ୍ତି—"ପ୍ରାକୃତବନ୍ଧେ ଭାଗବତ,

କହଇ ଜଗନ୍ନାଥ ଦାସ ।"

ଜଗନ୍ନାଥ ଦାସଙ୍କ ନବାକ୍ଷରୀ ବୃତ୍ତ ଦ୍ୱାରା ପ୍ରଭାବିତ ହୋଇ, ରାମଦାସଙ୍କ ପୂର୍ବବର୍ତ୍ତୀ ଓ ସମସାମୟିକ କେତେକ କବି ଯଥା—ହଳଧର ଦାସ, ଧନଞ୍ଜୟ ଭଞ୍ଜ, ହରେକୃଷ୍ଣ ଦାସ, ଦ୍ୱାରିକା ଦାସ, ଅରକ୍ଷିତ ଦାସ, କାହ୍ନୁ ଦାସ, କବୟିତ୍ରୀ ବୃନ୍ଦାବତୀ ଦାସୀ ପ୍ରଭୃତି କବିମାନେ ନବାକ୍ଷରୀ ବୃତ୍ତରେ ଗ୍ରନ୍ଥ ରଚନା କରିଛନ୍ତି ।

ରାମଦାସ ଜଗନ୍ନାଥ ଦାସଙ୍କ ଭାଗବତ ପରି ଅତି ସରଳ ଭାଷାରେ 'ଦାର୍ଢ୍ୟତାଭକ୍ତି' ରଚନା କରିଛନ୍ତି । ଜଗନ୍ନାଥ ଦାସ ଲେଖିଲା ପରି—"କହଇ ଦାସ ଜଗନ୍ନାଥ । ମୁକତି ଅଛଇ ବିଶ୍ୱାସ", ରାମଦାସ ଲେଖିଛନ୍ତି "କହଇ ଦୀନ ରାମଦାସ । ମୁକତି ଅଛଇ ବିଶ୍ୱାସ" । "ଜଗନ୍ନାଥ" ପ୍ରାକୃତବନ୍ଧେ ଭାଗବତ" ଲେଖିଲା ପରି ରାମଦାସ ଲେଖିଛନ୍ତି— "ପ୍ରାକୃତ ବନ୍ଧେ କଲୁଁ ଗୀତ ।" ଏଥିରୁ ରାମଦାସଙ୍କ ଉପରେ ଜଗନ୍ନାଥ ଦାସଙ୍କ ପ୍ରଭାବ ଲକ୍ଷଣୀୟ ।

ତେବେ ଜଗନ୍ନାଥ ଦାସଙ୍କ ଭାଗବତ ପରି ସୁନ୍ଦର ସୁଲଳିତ

ଗନ୍ଥ ଆଜି କେହି ଲେଖିପାର ନାହାନ୍ତି । ଏହି ଭାଗବତର ପଦାବଳୀ ମୂର୍ଖଠାରୁ ପଣ୍ଡିତ ଯାଏଁ ସମସ୍ତେ କଥାବାର୍ତ୍ତାରେ ବ୍ୟବହାର କରନ୍ତି । ଭବେ ଏର କେତୋଟି ଲୋକପ୍ରିୟ ପଦାବଳୀ ନିମ୍ନରେ ଦିଆଗଲା ।

ସକଳ ଦେହେ ନାରାୟଣ ।
ବସଇ ଅନାଦି କାରଣ ॥
ଅମୃତ ବଚନ ବଚନ ।
କହି ତୋଷିବ ପ୍ରାଣୀମନ ॥
ପ୍ରାଣୀର ଭଲ ମନ୍ଦ ବାଣୀ ।
ମରଣକାଳେ ତାହା ଜାଣି ॥
ଧର୍ମ ଅର୍ଜିଲେ ଧର୍ମ କର ।
ଧର୍ମେ ପ୍ରାପତ ନରହର ॥
କଲ୍ପନାମୂଳେ କାଳଥାଇ ।
ପ୍ରାଣୀ ତା ଜାଣି ନପାରଇ ॥
ମନ ମୋହର ନିଜ ଗୁରୁ ।
ଉଦ୍ଧବ କେତେ ତୁ ପଚ୍ଚୁରୁ ॥

ଏହାପରି ବାଇବେଲୀୟ ବାକ୍‌ଶକ୍ତି, ଶୁଦ୍ଧ ସରଳ ଅଥଚ ଗମ୍ଭୀର ଭାଷା ଅନ୍ୟ କବିମାନଙ୍କ ଲେଖାରେ କାହିଁ ? ମାନସିଂହ ଲେଖିଛନ୍ତି—"ଇଂରାଜୀ ବାଇବେଲ ପରି ଏଥିରେ ମଧ୍ୟ ଆମେ ପାଉ ସେହି ଏକ ପୁଣ୍ୟଗନ୍ଧ, ସେହି ସୁନ୍ଦର ଗତିଶୀଳତା ସେହି ସ୍ୱଭାବଜାତ ଗାମ୍ଭୀର୍ଯ୍ୟ ଓ ନୈତିକତା ଓ ଆଧ୍ୟାତ୍ମିକତାର

ସେହି ସଂପୂର୍ଣ୍ଣ ବାସ୍ତୁସ୍ତର, ଯାହା "ଶ୍ରୋତା ଓ ପାଠକର ହୃଦୟକୁ ଅବାଧରେ ପ୍ରଭାବିତ କରିବସେ ।"

ଜଗନ୍ନାଥ ଦାସ ମଧ୍ୟ ବୈଷ୍ଣବ କବି ଥିଲେ । ରାମଦାସ କେବଳ ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ନାହାନ୍ତି ସେ ଜଗନ୍ନାଥ ଦାସଙ୍କ ପ୍ରଥମ ଜୀବନୀକାର ଓ ଜଗନ୍ନାଥ ଦାସଙ୍କ ଆକୁଳ ନିବେଦନ କବି ରାମଦାସଙ୍କ ଲେଖାରେ ଜୀବନ୍ତ ଭାବେ ପ୍ରକାଶିତ ବୋଲି ଡ଼ଃ କୃଷ୍ଣଚନ୍ଦ୍ର ସାହୁ ମତ ଦିଅନ୍ତି । ଅବଶ୍ୟ ରାମଦାସ ଜଗନ୍ନାଥଙ୍କ ପ୍ରଥମ ଜୀବନୀକାର ନୁହନ୍ତି । କାରଣ ତାଙ୍କର ପୂର୍ବବର୍ତ୍ତୀ କବି ଦିବାକର ଦାସ ଜଗନ୍ନାଦସଙ୍କ ଧର୍ମମତ ଓ ଚରିତକୁ ନେଇ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥ ରଚନା କରିଛନ୍ତି । ମହାପୁରୁଷ ଚରିତ ହିସାବରେ ଏହା ଓଡ଼ିଆ ଭାଷାର ପ୍ରଥମ ଗ୍ରନ୍ଥ ବୋଲି କେଦାରନାଥ ବାବୁ କହନ୍ତି ।

## (ଛ) ରାମଦାସଙ୍କ ଉପରେ ଅନ୍ୟାନ୍ୟ ଗ୍ରନ୍ଥର ପ୍ରଭାବ ।

ଜଗନ୍ନାଥ ଦାସଙ୍କ 'ଭାଗବତ' ବ୍ୟତୀତ ଆଉ କେତୋଟି ଗ୍ରନ୍ଥର ପ୍ରଭାବରେ, ରାମଦାସ 'ଦାର୍ଢ୍ୟତାଭକ୍ତି' ରଚନା କରିଥିଲେ ବୋଲି କେତେକ ସମାଲୋଚକମାନେ ମତ ଦିଅନ୍ତି ।

ପଣ୍ଡିତ ନାଭାଜୀ କୃତ ହିନ୍ଦୀ 'ଭକ୍ତମାଳା' ର ଅନୁକରଣରେ 'ଦାର୍ଢ୍ୟତାଭକ୍ତି' ଲିଖିତ ବୋଲି କେଦାରନାଥ ବାବୁ ଲେଖିଛନ୍ତି । ସଂସ୍କୃତରେ ମଧ୍ୟ 'ଭକ୍ତମାଳା' ବୋଲି ଗୋଟିଏ ଗ୍ରନ୍ଥ ଅଛି ବୋଲି ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି ।

ହିନ୍ଦୀ ଭାଷାରେ ଲିଖିତ 'ଭକ୍ତମାଳା' ନାମକ ଏକ ହସ୍ତଲିଖିତ

ହିନ୍ଦୀବହି ମୁଁ ଦେଖିବାକୁ ପାଇଲି । ଏହାର ପ୍ରକାଶ ସମୟ ଖ୍ରୀ: ୧୮୮୨ ଓ ଲେଖକ ମହାରାଜା ରଘୁରାଜ ସିଂହଦେଓ । ବୋଧହୁଏ ଏହା ଛଡ଼ା, ପଣ୍ଡିତ ନାଭାଜୀଙ୍କ ଦ୍ୱାରା ଲିଖିତ ଅନ୍ୟ ଏକ 'ଭକ୍ତମାଳ' ବହିଥିବ ଯାହାର ଅନୁକରଣରେ ରାମଦାସ 'ଦାର୍ଢ୍ୟତା ଭକ୍ତି' ଲେଖିଥିବେ । ସେହି ବହି ନିଶ୍ଚୟ ରାମଦାସଙ୍କ ପୂର୍ବରୁ ଲେଖା ହୋଇଥିବ ।

ମୁଁ ଦେଖିଥିବା ଏହି ହିନ୍ଦୀ 'ଭକ୍ତମାଳ' ବହିରେ କେତୋଟି ଭକ୍ତଙ୍କ ବିଷୟ ବର୍ଣ୍ଣିତ ଅଛି ଯେଉଁମାନଙ୍କ ବିଷୟରେ ରାମଦାସ ମଧ୍ୟ ଲେଖିଛନ୍ତି । ଉଦାହରଣ ସ୍ୱରୂପ—ଅଜାମିଳ ସମ୍ବାଦ, କୁଳଶେଖର ରାଜା ଇତ୍ୟାଦି । ହିନ୍ଦୀ ବହିରେ ଅଜାମିଳ ଆଖ୍ୟା ଅଛି । ରାମଦାସ ମଧ୍ୟ ଅଜାମିଳ ପର୍ବ ଲେଖିଛନ୍ତି । ବିଷୟବସ୍ତୁ ସମାନ । ହିନ୍ଦୀ ବହିରେ କେତେକ ପ୍ରେମ ଦାସ, କୃଷ୍ଣ ଦାସ, ଜଗନ୍ନାଥ ଦାସ ପ୍ରଭୃତି ଭକ୍ତଙ୍କ କଥା ଅଛି । କିନ୍ତୁ ସେଗୁଡ଼ିକ ଦାର୍ଢ୍ୟତାଭକ୍ତିରେ ଥିବା ସେହି ନାମର ଭକ୍ତମାନଙ୍କ କଥାଠାରୁ ସମ୍ପୂର୍ଣ୍ଣ ପୃଥକ ।

ବୋଧହୁଏ ରାମଦାସ ଓ ରଘୁରାଜ ସିଂହ ଦେଓ ନାଭାଜୀଙ୍କ 'ଭକ୍ତମାଳ'ରୁ କେତେକ ଭକ୍ତଙ୍କ ଜୀବନୀ ସଂଗ୍ରହ କରି ଲେଖି-ଥିବେ । ତା ନ ହୋଇଥିଲେ 'ଅଜାମିଳ' ଚରିତ୍ର ସମାନ ହୁଅନ୍ତା କିପରି ? ନଚେତ୍ ରଘୁରାଜ ସିଂହଦେଓ ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି' ପଢ଼ି, ଏହି ବିଷୟଟି ସଂଗ୍ରହ କରିଥିବେ । ସଂସ୍କୃତ 'ଭକ୍ତମାଳ' ବହି ହୁଏତ ରାମଦାସ କିମ୍ବା ଉଭୟେ ପଢ଼ି ସେଥିରୁ କେତେକ ଭକ୍ତଙ୍କ ଚରିତ୍ର ସଂଗ୍ରହ କରିଥାଇ ପାରନ୍ତି । ନାଭାଜୀ କୃତ ହିନ୍ଦୀ ଭକ୍ତମାଳ କିମ୍ବା ସଂସ୍କୃତରେ ଲେଖାଥିବା 'ଭକ୍ତମାଳ'

ବହି ଦେଖିବା କିମ୍ବା ପାଠ କରିବା ସୌଭାଗ୍ୟ ମୋର ହୋଇ ପାରିଲା ନାହିଁ ।

## (ଜ) ପରବର୍ତ୍ତୀ ଲେଖକମାନଙ୍କ ଉପରେ 'ଦାର୍ଢ୍ୟତା ଭକ୍ତି'ର ପ୍ରଭାବ ।

'ଦାର୍ଢ୍ୟତା ଭକ୍ତି' ଗ୍ରନ୍ଥର ଲୋକପ୍ରିୟତା ଦେଖି ଜଣେ ଉଚ୍ଚ ଶିକ୍ଷିତ ବଙ୍ଗାଳୀ ବୈଷ୍ଣବ ଏହାକୁ ପ୍ରାୟ ଷାଠିଏ ବର୍ଷ ତଳେ ବଙ୍ଗଳା ଭାଷାରେ ଅନୁବାଦ କରିଥିବା କଥା ଜଣାଯାଏ । ଏହି ବଙ୍ଗଳା ବହିର ନାମ 'ଭକ୍ତର ଜୟ' । ଏହି ବହିର ଠାଏଁ ଠାଏଁ ଓଡ଼ିଆ ଉଦ୍ଧୃତ ( କୋଟେସନ୍ ) ଦେଖାଯାଏ ।

ମହାତ୍ମା କର୍ଣ୍ଣାମ ଗିରି ନାମକ ଜଣେ ଅଜ୍ଞାତ ଲେଖକ 'ଦାର୍ଢ୍ୟତାଭକ୍ତି ରସାମୃତ'ର ଅନୁକରଣ କରି 'ବଚନ ଦାର୍ଢ୍ୟତା ଭକ୍ତି ବା ଦାର୍ଢ୍ୟତା ରସାମୃତ' ନାମକ ଏକ ବହି ଲେଖିଛନ୍ତି । ଏହି ବହିର ରଚନା କାଳ ଓ ଛପା ସମୟ ଜଣା ପଡ଼ୁନାହିଁ । ଏହାର ପ୍ରକାଶକଙ୍କ ନାମ ପଣ୍ଡିତ ନରସିଂହ ମିଶ୍ର, କାବ୍ୟତୀର୍ଥ । ଏହି ବଚନ ଦାର୍ଢ୍ୟତା ଭକ୍ତିରେ କେତେକ ଭକ୍ତଙ୍କ ଜୀବନୀ ଏଗାର ଅକ୍ଷରୀ ବୃତ୍ତରେ ଲେଖା ଯାଇଛି । ଏହି ଷଦ୍ୱ ପୁସ୍ତକଟି ମୁଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରରେ ଦେଖିବାକୁ ପାଇଲି । ଏହାର ଲେଖକ ଜଣେ ତେଲୁଗୁ ଭାଷାଭାଷୀ ପରି ମନେହୁଏ । ରଚନାକାଳ ବୋଧହୁଏ ଚଳିତ ଶତାବ୍ଦୀର ପ୍ରାରମ୍ଭ ।

ଡ଼କ୍ଟର ମହତାବ ରାମଦାସଙ୍କ ଦାର୍ଢ୍ୟତାଭକ୍ତିରୁ ଉପାଦାନ ସଂଗ୍ରହ କରି ଓ ଉଦ୍ଧୃତି ଦେଇ 'ଝଙ୍କାର' ରେ 'ଭକ୍ତ ରଘୁ କେବଟ' ଦାସିଆବାଉରି ଓ 'କୃଷ୍ଣଦାସ' ପ୍ରଭୃତି ପ୍ରବନ୍ଧ ଲେଖିଛନ୍ତି ।

ଦାର୍ଢ୍ୟତାଭକ୍ତିରୁ ଉପାଦାନ ନେଇ ଶ୍ରୀ ବ୍ରଜକିଶୋର ସାହୁ 'ଭକ୍ତ ଓ ଜଗନ୍ନାଥ' ନାମକ ୩ ଖଣ୍ଡ ବହି ବର୍ତ୍ତମାନ ଲେଖିଛନ୍ତି । ଶ୍ରୀ କେଦାରନାଥ ମହାପାତ୍ର ଓ ଶ୍ରୀ ପ୍ରଭାତ ମୁଖାର୍ଜି ପ୍ରଭୃତି ଐତିହାସିକମାନେ 'ଦାର୍ଢ୍ୟତାଭକ୍ତି'ରୁ କେତେକ ତଥ୍ୟ ସଂଗ୍ରହ କରିଛନ୍ତି । 'ବନ୍ଧୁ ମହାନ୍ତି' ଚଳଚିତ୍ର, 'ଦାର୍ଢ୍ୟତା ଭକ୍ତି'ର ବନ୍ଧୁ ମହାନ୍ତି ଉପରେ ଆଧାରିତ ।

## (ଖ) ପଣ୍ଡିତ ନୀଳକଣ୍ଠଙ୍କ ଆକ୍ଷେପ—

ପଣ୍ଡିତ ନୀଳକଣ୍ଠ ଦାସ ରାମଦାସ ଓ ତାଙ୍କ ଗ୍ରନ୍ଥର ତୀବ୍ର ସମାଲୋଚନା କରି କହିଛନ୍ତି—ଏହି ଗ୍ରନ୍ଥରେ କାବ୍ୟ ବୋଲି କିଛି ନାହିଁ, ଚରିତ୍ର ବୋଲି କିଛି ନାହିଁ । ବର୍ଣ୍ଣନା ଚତୁରୀ ନାହିଁ କି ଭାଷାର ମାଧୁରୀ ନାହିଁ । "ଏହିପରି ବିଦ୍ୟାହୀନ, ମେରୁଦଣ୍ଡ ହୀନ, ଦର୍ଶନହୀନ, ଭାବହୀନ ରଚନା ପୃଥିବୀରେ ଆଉ ଅଛି ବୋଲି ମନେ ହେଉନାହିଁ ।" ଏହି ଗ୍ରନ୍ଥରେ କେବଳ ଭାକ୍ତିକ ମିଥ୍ୟା ଭରି ରହିଛି । ଉପାଖ୍ୟାନ ଗୁଡ଼ିକ ଏକ ପ୍ରକାର । ରାମଦାସଙ୍କ କୃଷ୍ଣ ଗୌଡ଼ୀୟ ବୈଷ୍ଣବଙ୍କ କୃଷ୍ଣ । ପରକୀୟା ପ୍ରେମ ନିବଦ୍ଧ ବୈଷ୍ଣବ ଧର୍ମରେ ଅତିକାୟ ଭାକ୍ତିକ ମିଥ୍ୟାର ଅଭାବ ନାହିଁ । ଶେଷକୁ ସାନ୍ତ୍ୱନା ଦେବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି— ଏସବୁ ସତ୍ତ୍ୱେ ସ୍ୱଚ୍ଛନ୍ଦ ଇନ୍ଦ୍ରିୟ ସେବାରେ ସଂକୋଚ କିନ୍ତୁ ଦାର୍ଢ୍ୟତା ପୁସ୍ତକରେ ବରାବର ପ୍ରକାଶ ପାଇଛି । ଏଥିରେ ଇନ୍ଦ୍ରିୟ ଧର୍ମକୁ ସ୍ପଷ୍ଟ ଘୃଣା କରାଯାଇଛି । ଅନ୍ୟ ଦିଗରେ ନାମର ମହିମାକୁ ଅତିକାୟ କରି ଭାକ୍ତିକ ମିଥ୍ୟାକୁ ସତ୍ୟ କରିବାର ଉଦ୍ୟମ ହୋଇଛି ।

କବି ରାମଦାସ, କନ୍ତୁ ସୁନ୍ନପୁର ଗୌଡ଼ୀୟ ବୈଷ୍ଣବ ନଥିଲେ ବୋଲି ଜଣାଯାଏ । ସେଥିରେ ଶ୍ରୀ ବୈଷ୍ଣବ, କବିଙ୍କ ବଂଶଧରମାନେ ଶ୍ରୀ ବୈଷ୍ଣବ ଅଛନ୍ତି, ଏମାନେ ମୁଖ୍ୟତଃ ରାମଭକ୍ତ । ରାମଦାସ ଲେଖାରେ ଯେ ବର୍ଣ୍ଣନା ଚାତୁରୀ କି ଭାଷାର ମାଧୁରୀ ନାହିଁ—ଏହାର କହିବା ଅତିରଞ୍ଜନ ମାତ୍ର । ତାଙ୍କର ବର୍ଣ୍ଣନା ଚାତୁରୀ ଠାଏ ଠାଏ ଉତ୍କର୍ଷତା ଲଭି କରିଛି ଯାହାର ପ୍ରଶଂସା ସମସାମୟିକ ସମାଲୋଚକମାନେ କରିଛନ୍ତି । ଡ଼ଃ ମାନସିଂହ ଲେଖିଛନ୍ତି ଯେ ଏଥିରେ କୌଣସି 'ଜାଲ ଚେଲୁ' ରହି ଯାଇଛି, ତଥାପି ସେଥିରେ ବିସ୍ମୃତ ହେବାର ଯୋଗ୍ୟ କିଛି ନାହିଁ କାରଣ ଭକ୍ତିଧର୍ମ ସେଥିରେ ସ୍ଫୁରିତ । ଇଷ୍ଟଦେବ କୃପାରୁ ଯେ ଅଘଟଣ ଘଟଣା ଘଟେ—ସେହାର ଛୁରୁର ଉତ୍ତରରେହିଁ ଭକ୍ତିବାଦ ଥିଲା ।

## ଓଡ଼ିଆ ସାହିତ୍ୟକୁ ରାମଦାସଙ୍କ ଅବଦାନ

ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ଓଡ଼ିଶା ଉପକୂଳରେ ମରହଟ୍ଟା ଆଧିପତ୍ୟ ପ୍ରତିଷ୍ଠିତ ହେବାରୁ ଭାରତର ରାଜନୀତି କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଥିଲା ବୋଲି ଐତିହାସିକ କେଦାରନାଥ ଲେଖିଛନ୍ତି । ହିନ୍ଦୁ ସମାଜର ଆରାଧ୍ୟ ଦେବତା ଜଗନ୍ନାଥଙ୍କ ଧର୍ମନୀତି ପ୍ରତି ଆକ୍ରମଣ ଆଶଙ୍କା ଦୂରୀଭୂତ ହୋଇଥିଲା । ବହୁ ନୂତନ ମନ୍ଦିର ଓ ମଠ ପ୍ରତିଷ୍ଠିତ ହୋଇଥିଲା । ଦେବାଳିଙ୍କ ମଠ ଓ ରାଜାମାନଙ୍କ ଆଶ୍ରୟରେ ବାସ କରୁଥିବା କବି ଓ ପଣ୍ଡିତମାନେ ବାଣୀ ଆରାଧନାରେ ଅଧିକ ମନୋଯୋଗ କରିଥିବାରୁ ଓଡ଼ିଆ ସାହିତ୍ୟର ବିଶେଷ ଅଭିବୃଦ୍ଧି ଘଟିଥିଲା । ଅଷ୍ଟାଦଶ ଶତାବ୍ଦୀର ଯେଉଁ କବି ଓ ଲେଖକମାନେ ଓଡ଼ିଆ ସାହିତ୍ୟକୁ ଯଥେଷ୍ଟ ଅବଦାନ ଦେଇଛନ୍ତି ସେମାନେ ହେଲେ—

କବି ଦମ୍ପତ୍ତି ଦାସ, କୃପାସିନ୍ଧୁ ଦାସ, ବନମାଳି ଦାସ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ପୀତାମ୍ବର ଦାସ, ରାମ ଦାସ, ମାଗୁଣି ପଟ୍ଟନାୟକ ଲକ୍ଷ୍ମଣ ମିଶ୍ର, ଦମ୍ପା ଦାସ, ବିଶ୍ୱମ୍ଭର ଦାସ, ଯଦୁ ନାଥ ଶ୍ରୀଚନ୍ଦନ, ଘନ ଭଞ୍ଜ, ଶିବନନ୍ଦ ଭଞ୍ଜ, ଧରାକୋଟର ରାଜା କୃଷ୍ଣସିଂହ, ନରହରି କବିଚନ୍ଦ୍ର, ଅନିରୁଦ୍ଧ ଜ୍ୟେଷ୍ଠରାୟ, ମଧୁସୂଦନ ହରିଚନ୍ଦନ ଜଗଦେବ, କବିଭୂଷଣ ଗୋପୀନାଥ ପାତ୍ର, କବିରାଜ କେଶବ ରଥ, ଅରକ୍ଷିତ ଦାସ, ଚକିଟିର ରାଜା ଲୁଳମଣି, ଖଗେନ୍ଦ୍ର, କୃଷ୍ଣଚନ୍ଦ୍ର, ଘନାନନ୍ଦ, କେଶବ ହରିଚନ୍ଦନ, ପୀତାମ୍ବର ରାଜେନ୍ଦ୍ର, ବ୍ରହ୍ମପାଣି ପଟ୍ଟନାୟକ, ନିଶଙ୍କ ରାୟ, ରାଣୀ ଭାଗୀରଥୀ, ସାମନ୍ତରାୟ, ବ୍ରଜନାଥ ବଡ଼ଜେନା, ମହାଦେବ ଦାସ ପ୍ରଭୃତି ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଯେଉଁ ତିନିଜଣ ପ୍ରଥମେ ଜୀବନୀ ସାହିତ୍ୟ ରଚନା କରିଥିଲେ ସେମାନେ ହେଲେ — ଦିବାକର ଦାସ, ଈଶ୍ୱର ଦାସ ଓ ରାମଦାସ, ଦିବାକର ଓ ଈଶ୍ୱର, ରାମଦାସଙ୍କ ପୂର୍ବବର୍ତ୍ତୀ କବି । ଦିବାକର ଦାସ ନବାକ୍ଷରୀ ବୃତ୍ତରେ (୧୬୩୦-୪୦) ଖ୍ରୀଷ୍ଟାବ୍ଦରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଚରିତ, ଧର୍ମମତ ଓ ବୈଷ୍ଣବ ତତ୍ତ୍ୱକୁ ନେଇ 'ଜଗନ୍ନାଥ ଚରିତାମୃତ' ରଚନା କରିଥିଲେ । ଓଡ଼ିଆ ସାହିତ୍ୟରେ ପ୍ରଥମ ଜୀବନୀ ଲେଖକର ଗୌରବ ଦିବାକର ଦାସଙ୍କ ପ୍ରାପ୍ୟ । ଦିବାକରଙ୍କ ପରେ ଈଶ୍ୱର ଦାସ 'ଶ୍ରୀ ଚୈତନ୍ୟ ଭାଗବତ' ନାମକ ଏକ ମହାପୁରୁଷ ଚରିତ ସମ୍ବଳିତ ଗ୍ରନ୍ଥ ରଚନା କରିଥିଲେ । ଏଥିରେ ଗୋରଖନାଥ, ରାମାନନ୍ଦ, ନାନକ, ଶ୍ରୀ ଚୈତନ୍ୟ, ଜଗାଇ ଓ ମାଧାଇ, ପ୍ରଭୃତିଙ୍କ ଚରିତ ଅଛି । ଏହା ମଧ୍ୟ ନବାକ୍ଷରୀ ବୃତ୍ତରେ ଲିଖିତ । ଏହି ଗ୍ରନ୍ଥ

ସପ୍ତାଦଶ ଶତାବ୍ଦୀର ଶେଷ ଭାଗରେ ରଚିତ ବୋଲି କେଦାରନାଥ ବାବୁ ମତ ଦିଅନ୍ତି ।

ଏହି ୩ ଜଣ ପ୍ରାଚୀନ ଜୀବନୀ ଲେଖକ ମଧ୍ୟରୁ ରାମଦାସଙ୍କୁ ଶ୍ରେଷ୍ଠ କୁହାଯାଇ ପାରେ । ଏତେ ଗୁଡ଼ିଏ ଭକ୍ତଙ୍କ ଜୀବନୀ ସଂଗ୍ରହ କରି ଦୁଇଟି ଖଣ୍ଡରେ ସେ ଯେଉଁ ବିରାଟ 'ଦାର୍ଢ୍ୟତାଭକ୍ତି ରସାମୃତ' ବହି ଲେଖିଛନ୍ତି ତାହା ଓଡ଼ିଆ ସାହିତ୍ୟକୁ ଏକ ମହାନ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । ମାନସିଂହଙ୍କ ଭାଷାରେ— "ରାମଦାସ ଯେ ଦାର୍ଢ୍ୟତାଭକ୍ତିରେ ଏତେ ଗୁଡ଼ିଏ ଜୀବନୀ ସଂଗ୍ରହ କରି ପରିବେଷିତ କରି ଯାଇଛନ୍ତି, ସେଥିପାଇଁ ସେ ଆମର ସଦା ସମ୍ମାନାର୍ହ । × × ସେ ଏ ଯୁଗରେ ବଞ୍ଚିଥିଲେ ନିଶ୍ଚୟ ଜଣେ ଉଚ୍ଚ କୋଟୀର ଜୀବନ ଚରିତକାର ବା ଐତିହାସିକ ରୂପେ ଖ୍ୟାତି ଲାଭ କରିଥାନ୍ତେ ।" ମାନସିଂହ ପୁଣି କହନ୍ତି—"ଓଡ଼ିଆ ସାହିତ୍ୟର ବର୍ଣ୍ଣନା ଭିତରେ ବିପ୍ର ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି ରସାମୃତ' ର ନାମୋଲ୍ଲେଖ ନକରିବା ନିଶ୍ଚୟ ଏକ ଅପରାଧ ।"

ଶ୍ରୀ ଅମୂଲ୍ୟ କୃଷ୍ଣ ମିଶ୍ର ଲେଖିଛନ୍ତି ଯେ—କବି ରାମଦାସଙ୍କ ଏହି ଗ୍ରନ୍ଥରେ ବର୍ଣ୍ଣିତ ଥିବା ସାଲବେଗ ଉପାଖ୍ୟାନ ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥରେ ଭକ୍ତକବି ସାଲବେଗଙ୍କ ବାଲ୍ୟ ଓ କିଶୋର ଜୀବନ ସମ୍ପର୍କରେ କିଛି ଆଲୋକପାତ କରା ଯାଇଥିବାର ଜଣା ପଡ଼ିନାହିଁ ।

ବରିଷ୍ଠ ଐତିହାସିକ ଉତ୍କଳ ସତ୍ୟନାରାୟଣ ରାଜଗୁରୁ କହନ୍ତି— " ଏ ଗ୍ରନ୍ଥରେ ବହୁ ଭକ୍ତ ଓ ବୈଷ୍ଣବ କବିଙ୍କର ଜୀବନ ଚରିତ ସଙ୍ଗେ ମହାତ୍ମ୍ୟ ଉଲ୍ଲେଖ ହୋଇଥିବାରୁ

ଓଡ଼ିଶା ଇତିହାସରେ ଏବଂ ଓଡ଼ିଆ ସାହିତ୍ୟର ଇତିହାସରେ ଏହା ଗୋଟିଏ ଉତ୍କୃଷ୍ଟ ଗ୍ରନ୍ଥ ରୂପେ ପରିଗୃହୀତ ହୁଏ ।"

ଶ୍ରୀମତୀ ନିବେଦିତା ନାୟକ ଲେଖିଛନ୍ତି ଯେ ଏହି ଗ୍ରନ୍ଥରେ ସ୍ଥଳେ ସ୍ଥଳେ ମାନବିକ ବାସ୍ତବ ଅନୁଭୂତି ସହିତ ଅଲୌକିକ ଭଗବତ ଅନୁଭୂତିର ସମ୍ମିଶ୍ରଣ ଘଟିଥିବା ପରିଲକ୍ଷିତ ହୁଏ । "ମାନବିକ ଦୁର୍ବଳତାର ବାସ୍ତବ ଉଲ୍ଲେଖ ସହିତ ଭଗବତ୍ ବିଶ୍ୱାସର ସୂଚନା ଏହି ଗ୍ରନ୍ଥଟିକୁ ଉତ୍ତୀର୍ଣ୍ଣ କରି ପାରିଛି ।"

ଡକ୍ଟର ମାନସିଂହଙ୍କ ଭାଷାରେ ପୁଣି କହିବାକୁ ଗଲେ— "ବିପ୍ର ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି' ଯାହା ପ୍ରଚ୍ଛର କରୁଅଛେ ଏହା ଯେ ଓଡ଼ିଆ ଭାଷାରେ ଏକ ସୁଲିଖିତ, ସୁଲଳିତ ପଦ୍ୟଗ୍ରନ୍ଥ ଏଥିରେ ସନ୍ଦେହ ନାହିଁ ।"

## —ନିବେଦନ—

ଦୁଃଖର ବିଷୟ, ଏହି ପ୍ରାଚୀନ ବରେଣ୍ୟ କବିଙ୍କ ସ୍ମୃତିରକ୍ଷା ଓ ପ୍ରତିଭା ପୂଜା ପାଇଁ କବିଙ୍କ ଜନ୍ମପୀଠ ଉକ୍ତ ଗ୍ରାମରେ କୌଣସି ଉଲ୍ଲେଖନୀୟ କାର୍ଯ୍ୟ ଅଦ୍ୟାବଧି ହୋଇନାହିଁ । ଉକ୍ତ ଗ୍ରାମରେ କବିଙ୍କ ଏକ ପ୍ରତିମୂର୍ତ୍ତି ସ୍ଥାପନ ଓ ସ୍ମୃତି ମନ୍ଦିର ନିର୍ମାଣ କରାଯିବା ଦରକାର । ଉକ୍ତ ଗ୍ରାମ ନାମ 'ରାମଦାସପୁର' କିମ୍ବା 'ରାମଦାସ ନଗର' ରଖି ଗଲେ ଭଲ ହୁଅନ୍ତା । ଉକ୍ତ ହାଇସ୍କୁଲର ନାମ ଦେଶନାଲ ହାଇସ୍କୁଲ ବଦଳରେ 'ଭକ୍ତକବି ରାମଦାସ ବିଦ୍ୟାପୀଠ' ରଖାଯିବା ଉଚିତ ।

ଏହା ବ୍ୟତୀତ 'ଦାର୍ଢ୍ୟତାଭକ୍ତି ରସାମୃତ' ବହିର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ ପାଇବା ନିତାନ୍ତ ଜରୁରୀ ହୋଇ ପଡ଼ୁଛି । ବର୍ତ୍ତମାନ ମିଳୁଥିବା ବିଭିନ୍ନ ଛପା ସଂସ୍କରଣ ତଥା ତାଳପତ୍ର ପୋଥିରେ ଅନେକ ପଦ, ବାକ୍ୟ ଓ ତଥ୍ୟର ଅମେଳ ଦେଖା ଯାଉଛି । କାଳକ୍ରମେ ଏକ ବିକୃତ, ବିକଳାଙ୍ଗ 'ଦାର୍ଢ୍ୟତାଭକ୍ତି ବହି' ବଜାରକୁ ଆସିବ—ଯଦି ଯଥେଷ୍ଟ ଆଗରୁ ଏ ସମ୍ପର୍କରେ ପଦକ୍ଷେପ ନିଆ ନଯାଏ । କବିଙ୍କ ଜନ୍ମପୀଠ ଓ ଅନ୍ୟ ସ୍ଥାନରୁ ମିଳୁଥିବା ବିଭିନ୍ନ ତାଳପତ୍ର ପୋଥି ଅନୁଧ୍ୟାନ କରି ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା ନିତାନ୍ତ ଆବଶ୍ୟକ । ଡୁରି ଗ୍ରାମର ଅତି ନିକଟରେ ଥିବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଏ ସଂକ୍ରାନ୍ତରେ ପଦକ୍ଷେପ ତୁରନ୍ତ ନେବାକୁ ମୋର ଅନୁରୋଧ ।

—※ ସ ମା ପ୍ତ ※—

# ସହାୟକ ପୁସ୍ତକ ଓ ପତ୍ରିକାର ସୂଚୀ


୧) ଓଡ଼ିଶା ଇତିହାସ (୨ୟ ଖଣ୍ଡ)—ଡ଼କ୍ଟର ହରେକୃଷ୍ଣ ମହତାବ (୧୯୭୪ ସଂସ୍କରଣ)

୨) ଖୋର୍ଦ୍ଧା ଇତିହାସ —ଶ୍ରୀ କେଦାରନାଥ ମହାପାତ୍ର

୩) ପ୍ରାଚୀନ ଉତ୍କଳ —ଜଗବନ୍ଧୁ ସିଂହ ।

୪) History of Orissa (Ist Edn. 1979) —Dr. N K. Sahu, Dr. P.K. Misra, Dr. J. K. Sahu.

୫) ଓଡ଼ିଆ ସାହିତ୍ୟର ଇତିହାସ - ଅଧ୍ୟାପକ ପଠାଣୀ ପଟ୍ଟନାୟକ

୬) ଓଡିଆ ସାହିତ୍ୟର ଇତିହାସ —ଡ଼କ୍ଟର ମାୟାଧର ମାନସିଂହ

୭) ଓଡିଆ ସାହିତ୍ୟର ଇତିହାସ —ପଣ୍ଡିତ ବିନାୟକ ମିଶ୍ର

୮) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ-ପଣ୍ଡିତ ନୀଳକଣ୍ଠ ଦାସ ।

୯) Oriya Literature —J. B. Mohanty

୧୦) ଉତ୍କଳ ସାହିତ୍ୟକା ଇତିହାସ (ହିନ୍ଦୀ) —ଅନସୂୟା ପ୍ରସାଦ ପାଠକ

୧୧) ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ —ଚକ୍ରଧର ମହାପାତ୍ର ।

୧୨) ସାହିତ୍ୟ ଓ ସାହିତ୍ୟିକ —ଶ୍ରୀ ସୁଦର୍ଶନ ଆଚାର୍ଯ୍ୟ ।

୧୩) ଓଡିଆ ସାହିତ୍ୟର ଇତିହାସ (୩ୟ ଭାଗ) —ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

୧୪) [illegible] ମହାଦାସ ଓ [illegible] ଭକ୍ତି ରସାମୃତ (ପ୍ରବନ୍ଧ) ଶ୍ରୀ ସୀତାରାମ ମହାନ୍ତି ।

୧୫) 'ଦାର୍ଢ୍ୟତାଭକ୍ତି' ତାଳପତ୍ର ପୋଥି

—୬ ଉଦ୍ଧବନାଥ ପଟ୍ଟନାୟକଙ୍କ ଦ୍ୱାର ନକଲକୃତ ।

୧୬) —do— —୬ ହରିହର ପାତ୍ରଙ୍କ ଦ୍ୱାରା ନକଲ କୃତ

୧୭) ଭକ୍ତମାଳା (ହିନ୍ଦୀ) —ମହାରାଜା ରଘୁରାଜ ସିଂହ ଦେବ

୧୮) ଝଙ୍କାର—ଫେବୃଆରୀ ୧୯୫୮

୧୯) ଝଙ୍କାର - ଅକ୍ଟୋବର ୧୯୬୩

୨୦) ଝଙ୍କାର—ନଭେମ୍ବର ୧୯୬୮

୨୧) ଝଙ୍କାର - ମେ ୧୯୬୯

୨୨) ଝଙ୍କାର - ଜୁନ ୧୯୮୦

୨୩) ଝଙ୍କାର—ସେପ୍ଟେମ୍ବର ୧୯୮୦

୨୪) ସପ୍ତର୍ଷି—ଅକ୍ଟୋବର, ୧୯୭୨



ପଢ଼ନ୍ତୁ ଏହି ଲେଖକଙ୍କର

# -ନୀଳ ବିସ୍ମୟ-

( ଆଧୁନିକ କବିତା ସଙ୍କଳନ )

ପ୍ରାପ୍ତିସ୍ଥାନ—ଗ୍ରନ୍ଥ ମନ୍ଦିର, ବ୍ରହ୍ମପୁର